
ଲେଡି ମ୍ୟାକ୍‌ବେଥ୍
ନିକୋଲାସ୍ ଲେସ୍‌କଭଂ
ଓଡିଆ ରୂପାନ୍ତର: ରାମଚନ୍ଦ୍ର ସାହୁ

# ଲେଡ଼ି ମ୍ୟାକ୍‌ବେଥ୍

ମୂଳଲେଖା : ନିକୋଲାଯ୍ ଲେସକାଫ୍
ଓଡ଼ିଆ ରୂପାନ୍ତର : ରାମଚନ୍ଦ୍ର ସାହୁ (ଗତ)



ଅଗ୍ରଦୂତ
କଟକ-୨

**ଲେଡ଼ି ମ୍ୟାକବେଥ୍** ।। ମୂଳଲେଖା : **ନିକୋଲାସ୍ ଲେସକାଫ୍** ।। ଓଡ଼ିଆ ରୂପାନ୍ତର : **ରାମଚନ୍ଦ୍ର ସାହୁ** (ମୃତ) ।। ପ୍ରକାଶକ : **ଅଗ୍ରଦୂତ**, ବାଙ୍କାବଜାର, କଟକ-୭୫୩୦୦୨ ।। ପ୍ରଥମ ପ୍ରକାଶ : **୧୯୯୬** ।। ପ୍ରଚ୍ଛଦ : **ଶଶିକାନ୍ତ ରାଉତ** ।। ମୁଦ୍ରଣ : **ମା' ତାରତାରିଣୀ ପ୍ରିଣ୍ଟର୍ସ**, କଟକ-୧ ।। ମୂଲ୍ୟ : **କୋଡ଼ିଏ ଟଙ୍କା** ।।

**LADY MACBETH** || Russian writter : **Nicolas Lescaff** || Translator by : **Ramachandra Sahu** || Published by : **Agraduta**, Bankabazar, Cuttack-753002 || First Edition : **1996** || Printed by : **Maa Taratarini Printers**, Sutahat, Cuttack-1 || Price : Rs. **20-00** ||

ISBN 81-86354—31—X

ଲେସକାଫଙ୍କ ଜନ୍ମ—୧୮୩୧

ମୃତ୍ୟୁ—୧୮୯୫

ପ୍ରଥମ ପ୍ରକାଶ—୧୮୬୫

ଏଇ ଉପନ୍ୟାସଟିକୁ ପ୍ରାୟ ଗ୍ରୀକ୍‌ଟ୍ରାଜେଡ଼ୀରୂପେ ସ୍ୱୀକୃତି ଦେଲେ ଅତ୍ୟୁକ୍ତି ହେବ ନାହିଁ । ଋଷୀୟ ଔପନାସିକ ଚେଖଭ୍‌ଙ୍କ 'ଦୁଲଜୀ' ସମକକ୍ଷ ବୋଲି ଟଲଷ୍ଟୟ ଏକଦା କହିଥିଲେ ।

ଅନୁବାଦକ

ମଝିରେ ମଝିରେ ଆମ ଏଇ ଅଞ୍ଚଳରେ ଏମିତି ସବୁ ନରନାରୀଙ୍କ ଆବିର୍ଭାବ ହୁଏ ଯେ, ତା'ପରେ ଯେତେ ଦୀର୍ଘକାଳ କଟି ଯାଉନା କାହିଁକି ତାଙ୍କ କଥା ସ୍ମରଣକୁ ଆସିଲେ ଯେମିତି ଅନ୍ତରାତ୍ମା ପର୍ଯ୍ୟନ୍ତ କମ୍ପି ଉଠେ ।

ଏବଂ, ଏମାନଙ୍କ ମଧ୍ୟରେ ନିଶ୍ଚୟ ଆସେ ଜଣେ ବ୍ୟବସାୟୀର ସ୍ତ୍ରୀ— କାତେରୀନା ଲଭ୍‌ଉନା ଇସ୍‌ମାଇଲଭ । ତା ଜୀବନଟା ଏମିତି ବୀଭତ୍ସ ନାଟକୀୟ ରୂପ ନେଇଥିଲା ଯେ—ଆମ ସମାଜର ପାଞ୍ଚଜଣ ଭଦ୍ରଲୋକ କୌଣସି ଗୋଟେ ମସ୍କରାବାଜ୍ ଅନୁକରଣରେ ଯାକୁ ନାଁ ଦେଇଥିଲୁ—'ମତ୍‌ସେନସ୍କ ଜିଲ୍ଲାର ଲେଡ଼ି ମ୍ୟାକବେଥ୍ !'

କାତେରୀନା ସେମିତି କିଛି ଅପୂର୍ବ ସୁନ୍ଦରୀ ନଥିଲା କିନ୍ତୁ ଚେହେରାଟି ଥିଲା ସତରେ ସୁନ୍ଦର । ସେତେବେଳେ ତାର ବୟସ ପାଖାପାଖି ଚବିଶ, ମଧ୍ୟମ ରକମର ଉଚ୍ଚତା, ଭଲ ଗଢ଼ଣ, ଆଉ ଗଳାଟି ଯେମିତି ମାର୍ବଲ ପଥରରେ କୁନ୍ଦାଯାଇଛି । ବେକ ପାଖରୁ ବାହୁ ନଇଁ ଆସିଛି ସୁନ୍ଦର ଗୋଟେ ବଙ୍କୁଲି ନଇ ଭଳି, ଛାତିଟି କାଟ୍‌ଖୁଣ୍ଟ, ନାକଟି ବଂଶୀ ଭଳି ଶକ୍ତ ଆଉ ସୋଜା, ଶୁଭ୍ର ଉନ୍ନତ ଲଲାଟ ଆଉ ଚୁଳ ଏମିତି ମସମସ କଳା ଯେ ଅସଲରେ ଏଟାକୁ କଳାରେ ନୀଳ ରଙ୍ଗ ମିଶା ଯାଇଛି ବୋଲି କୁହାଯାଇ ପାରେ । ତାର ବିବାହ ବ୍ୟବସାୟୀ ଇସ୍‌ମାଇଲଫେ ସହିତ ହୋଇଥିଲା । ସେ ବିବାହକୁ ପ୍ରେମ ବା ଏଇଧରଣର ଅନ୍ୟ କଉ କାରଣରେ ହେଇନାଇଁ—ଅସଲରେ ଇସ୍‌ମାଇଲଫ୍ ତାକୁ ବିବାହ କରିବାକୁ ଚାହିଁଥିଲା ଆଉ କାତେରୀନା ଗରୀବ ଘର ଝିଅ ବୋଲି ବିଶେଷ ବାଛବିଚାର କରିବାକୁ ଉପାୟ ବି ତାର ନଥିଲା ।

ଇସମାଇଲଫ୍ ପରିବାର ଆମ ସହରର ଗଣ୍ୟମାନ୍ୟଙ୍କ ଭିତରୁ ଅନ୍ୟତମ । ତାଙ୍କର ବ୍ୟବସାୟ ଥିଲା ସବୁଠୁ ଭଲ ଏକ ନମ୍ବର ମଇଦା ଗହମ ପେଷିବା ପାଇଁ ବଡ଼ ପେଷାକଳଟିଏ ଭଡ଼ା ନେଇଥିଲେ । ସହର ବାହାରେ ଫଳ ବଗିଚାରୁ ତାଙ୍କର

ବେଶ୍ ଦିପଇସା ଆସୁଥିଲ ଏବଂ ସହର ଭିତରେ ଭଲ କୋଠା ଘରଟିଏ ଥିଲ । ସଂକ୍ଷେପରେ କହିଲେ, ସେମାନେ ଧନୀ ବ୍ୟବସାୟୀ ଗୋଷ୍ଠୀ ଭିତରୁ ଅନ୍ୟତମ । ତା ଉପରେ ପରିବାର ଆଦୌ ନିର୍ଭର କରୁନଥିଲ । ଶ୍ୱଶୁର ତିମୋତେଇଭିଚ୍ ଇସମାଇଲଫ୍, ଅଶୀ ଭଳି ବୟସ, ବହୁକାଳ ପୂର୍ବେ ତା ସ୍ତ୍ରୀ ମରିଯାଇଛି । ତାର ପୁଅ, କାତେରୀନାର ସ୍ୱାମୀ ଜିନୋଭିଇ ବରିସିଚ୍, ପଚାଶ ଠାରୁ କିଛି ବେଶୀ—ଆଉ ସବାଶେଷରେ କାତେରୀନା ବାସ୍ । ପାଞ୍ଚବର୍ଷ ହୋଇଗଲ ବାହାଘର କିନ୍ତୁ ଏଯାଏ ପିଲପିଲି କିଛି ହୋଇନି । ପ୍ରଥମ ପକ୍ଷ ସ୍ତ୍ରୀ ଆଡ଼ୁ କୌଣସି ପିଲ ବି ନଥିଲ—ଜିନୋ-ଭିୟେର ସହିତ କୋଡ଼ିଏ ବର୍ଷଧରି ଘର କଲ ସତ୍ତ୍ୱେ । ତାର ମୃତ୍ୟୁ ପରେ ସେ କାତେରୀନାକୁ ବିହାହ କରେ । ଏଥର ସେ ଆଶା କରିଥିଲ, ଭଗବାନଙ୍କ ଆଶୀର୍ବାଦ ଏ ବିବାହ ଉପରେ ନଇଁ ଆସିବ—ବଂଶର ସୁଖ୍ୟାତି ସମ୍ପତ୍ତି ବଞ୍ଚେଇବା ପାଇଁ ସନ୍ତାନ ହେବ, କିନ୍ତୁ କପାଳ ଫଟା—କାତେରୀନା ପାଖରୁ କିଛି ପାଇଲନି ।

ଏଥିନେଇ ଜିନୋଭିୟେର ମନସ୍ତାପର ଶେଷ ନାହିଁ ଏବଂ କେବଳ ସେ ନୁହଁ—ବୁଢ଼ା ବରିସେର ବି । କାତେରୀନା ବି ଏହା ଉପରେ ଖୁବ୍ ଦୁଃଖୀ ଥିଲ । ଆଉ କିଛି ନ ହେଉ—ଏଇ ଅନ୍ତହୀନ ଏକବାଗୀଆ ଜୀବନ ତାକୁ ଶୁଷ୍କ କରିଦେଇଛି । ଭଗବାନ ଜାଣନ୍ତି ଏଠାକୁ ଆସିଲପରଠୁ କେତେ ଟିକେ ସୁଖ ପାଇଛି ସେ । ଯଦି ଖାଇବା ପିଇବା ପିନ୍ଧିବା ପାଇଁ ଗୋଟେ ପିଲ ଥାଆନ୍ତା—ତେବେ ଏଇ ବନ୍ଦ, ଉଚ୍ଚା ପାଚେରୀ ଘେରା, ହୁମ୍‌ହୁମୀଆ କୁକୁର ଭର୍ତ୍ତି ଘରର ଅସହ୍ୟ ଏକଟଣା ଜୀବନ ଭିତରୁ ରକ୍ଷା ପାଇଯାନ୍ତା । କେବଳ ସେତିକି ନୁହଁ, ଗୋଟେ ଥୁଣ୍ଟା ଶୁଣିଶୁଣି ତାର ପ୍ରାଣଟା ଅତିଷ୍ଠ ହେଇଗଲଣି—ବାହା ହେଲୁ କାହିଁକି ? ଗୋଟେ ଭଦ୍ରଲୋକର ଜୀବନ ସର୍ବନାଶ ତୁ କଲୁ—ଡାଆଣୀ···ବାଁଝ କଉଠିକାର ! ସତେ ଏ ପ୍ରକାର ମାରତ୍ମକ ପାପଟା ତାର, ତା ସ୍ୱାମୀର ନୁହଁ, ଶ୍ୱଶୁର ବିରୁଦ୍ଧରେ ଏମିତିକି ଯେତେସବୁ ବ୍ୟବସାୟୀ ଗୋଷ୍ଠୀ ବିରୁଦ୍ଧରେ ! ଧନ ଐଶ୍ୱର୍ଯ୍ୟ, ଆରାମ-ଅୟସରେ ପୂର୍ଣ୍ଣ ଏଇ ଘରଟି ଭିତରେ କାତେରୀନାର ଥିଲ ସବୁଠାରୁ ନିଃସଙ୍ଗ ଜୀବନ । କାହାସହ ଦେଖାସାକ୍ଷାତ୍ ହେବା ସ୍ୱପ୍ନ । ଯଦି କେବେ କେମିତି ତା ସ୍ୱାମୀ ସାଙ୍ଗରେ ପଡ଼ୋଶୀଙ୍କ ଘରକୁ ବୁଲିବାକୁ ଗଲେବି ସେଥିରେ ଆନନ୍ଦ ନଥିଲ । ସେମାନେ ସବୁ ମରହଟ୍ଟୀ ଧରଣର କଡ଼ାଲୋକ । ସେମାନେ ଖୁଣ୍ଟିଖୁଣ୍ଟି ଦେଖନ୍ତି, ସେ କେମିତି ବସେ, ତାର ଆଚରଣ କିଭଳି, ସେ କେମିତି ଉଠେ । କିନ୍ତୁ କାତେରୀନା ପିଲବେଳୁ ତେଜୀ ଏବଂ ଦୁଃଖ-ଦୈନ୍ୟ ଭିତରେ ଶୈଶବଟା ତାର କଟିଛି ବୋଲି ଅନାଡ଼ମ୍ବର ଓ ମୁକ୍ତ ଜୀବନ ସହିତ ଅଭ୍ୟସ୍ତ । ଚାହିଁଲେ ଏଇକ୍ଷଣି ଦୁଇଟା ବାଲଟି ଦୁଇ ହାତରେ ଧରି ଚାଲିଯିବ ଜାହାଜ ଘାଟଯାକେ । ସେଇଠି କେବଳ ଶେମିଜ ମଡ଼େଇ ଗାଧାଏ କିମ୍ବା ସାମାନ୍ୟ ଫାଙ୍କା ଦେଖି ରାସ୍ତାର ସେଇ ଟୋକାଟା ଉପରକୁ ବାଦାମ ଖୋସା ଛଡ଼େଇ ପକାଏ ।

କିନ୍ତୁ ହାୟ ! ଏଠି ସବୁ କିଛି ଓଲଟା । ଭୋର ହେବା ଆଗରୁ ତାର ଶ୍ୱଶୁର ଆଉ ସ୍ୱାମୀ ନିଦରୁ ଉଠି ବେଲ୍ଟଏ ବେଲ୍ଟଏ ଗ୍ର' ପିଇ ଛ'ଟା ଭିତରେ କାମକୁ ବାହାରି ଯାଆନ୍ତି ଆଉ ସେ ଏକାକୀ ଏଘର ସେଘର ଘୂରି ଘୂରି ମରିପଡ଼େ । ସବୁ-କିଛି ଛମଛୁମ୍, ଫାଙ୍କା । ଦେବ-ଦେବୀଙ୍କ ସାମ୍ନାରେ ମିଞ୍ଜିମିଞ୍ଜି ଦୀପ ଜଳୁଛି । ଘର ସାରା ମଣିଷଙ୍କ ଚିହ୍ନ ନାହିଁ କାହାରି କଣ୍ଠସ୍ୱର ଶୁଭେ ବି ନାହିଁ ।

କାତେରୀନା ଫାଙ୍କା ଏଘରରୁ ଫାଙ୍କା ସେ' ଘରକୁ ଯାଏ, ତା'ପରେ ଆଉ ଗୋଟେ ଦଫା ଆଉ କିଛି ଥର ଘୂରଫେର କରେ, ତା'ପରେ ଏକଟଣା ପାଇଁ ହାଇ ଛାଡ଼େ । ତା'ପରେ ସବୁ ସିଢ଼ି ବାଟେ ଧୀରେ ଧୀରେ ଉପରକୁ ଉଠେ, ଶୋଇବା ଘରକୁ । ସେଠି କିଛି ସମୟ ଅଳସ ଆଖିରେ ଅନାଇ ରୁହେ ତଳକୁ ଯେଉଁଠି ଦଉଡ଼ି ବୁଣା ପାଇଁ ଝୋଟ ଓଜନ ହେଉଛି କିମ୍ବା ଅତି ଉତ୍କୃଷ୍ଟ ମିହି ମଇଦା ଗୋଦାମ ଘରେ ପୂରା ଯାଉଛି । ପୁଣି ହାଇ ଛାଡ଼େ, ଏମିତି କଲେ କିଛି ଆରାମ ପାଏ । ତା'ପରେ ଘଣ୍ଟାଏ ଖଣ୍ଡେ, ଦୁଇଘଣ୍ଟା ଭଳି ଶୋଇକି ଉଠିଲା ପରେ ପୁଣି ଆସିବ ସେଇ ଏକଘେୟାଁମୀ—ରୁଷଦେଶର ଖାଣ୍ଟି ଏକଘେୟାଁମୀ, ବ୍ୟବସାୟୀ ଘରର ଏକଘେୟାଁମୀ । ସେଇ ଏକଟଣା, ବୈଚିତ୍ରହୀନ ଏକଘେୟାଁମୀ ଏମିତି ନିରନ୍ଧ୍ର ଯେ ତାକୁ ଲୋକେ କହନ୍ତି, ଯେତେବେଳେ କିଛି କାମଧନ୍ଦା ନଥାଏ କିଛି ଗୋଟିଏ ବୈଚିତ୍ର ଆଣିବା ପାଇଁ ମଣିଷ ଆନନ୍ଦରେ ବେକରେ ରଶି ଦେଇ ଦେଖେ ଏଥିରେ କିଛି ହୋଇ ପାରୁଛି କି ନା ! କାତେରୀନାର ବହି ପଢ଼ିବାକୁ ବିଶେଷ ସଅକ୍ ନଥିଲା । ଆଉ ଥିଲେ ବି ଲାଭ କଣ ? ଘରସାରା ଥିଲା ସର୍ବମୋଟ ଖଣ୍ଡେ ବହି—କିୟେଫ୍ ସହରରେ ସଂକଳିତ "ସନ୍ଥମାନଙ୍କ ଜୀବନୀ" ।

ଧନଦୌଲତ ଭରା ଶଶୁର ଘରେ କାତେରୀନାର ପୂରା ପାଞ୍ଚଟି ବର୍ଷ କଟିଗଲା ଅସହ୍ୟ ଏକଘେୟାମୀରେ—ମମତାହୀନ ସ୍ୱାମୀ ସହିତ ସହବାସ କରେ । କିନ୍ତୁ ବେଳେବେଳେ ଯା' ହୁଏ—ଏ କ୍ଷେତ୍ରରେ କେହି ସେ ଆଡ଼କୁ ଘୃଣାକ୍ଷରେ ଭ୍ରୂକ୍ଷେପ କରନ୍ତି ନାହିଁ ।

କାତେରୀନାର ଛ'ବର୍ଷ ବିବାହ ପରେ, ଯେଉଁ ବନ୍ଧ ପାଣିଯୋଗୁ ଇସମାଇଲଫ୍‌ଙ୍କ ଗହମ ପେଷା କଳ ଚାଲୁଥିଲା ସେଟା ଫାଟିଗଲା । ଆଉ ଈଶ୍ୱର

ଖେନ୍ତେଇ ହେବାକୁ ସମୟ ପାଇଲେ, ମିଲ୍ ଉପରେ ପ୍ରଚଣ୍ଡ କାମର ଚାପ ପଡ଼ିଲା । ସେତେବେଳେ ଧରା ପଡ଼ିଲା ଯେ ନଦୀର ଗଣ୍ଡ ବିଗଡ଼ । ପାଣି ପହଞ୍ଚି ସାରିଛି ସମସ୍ତଙ୍କ ତଳ ଧାପରେ । ଜୋଡ଼େଇ କଲେ କୌଣସି ପ୍ରକାରେ ଭଙ୍ଗା ଅଂଶଟିକୁ ମରମତ କରି କରି ସବୁ ଚେଷ୍ଟା ନିଷ୍ଫଳ ହେଲା । ଜିନୋଭିଇ ପାଖାପାଖି ଚାରିଆଡ଼ୁ ଆପଣା ଲୋକଙ୍କ ଗହମ କଳରେ ଗହମ ପୂରେଇ ପେଷି ବସିଲେ ଦିନପରେ ଦିନ, ଘଡ଼ି ପରେ ଘଡ଼ି । ବୁଢ଼ା ବାପା ସେପଟେ ସହର ବେଉସା ସମ୍ଭାଳିଲେ । କାତେରୀନାର ନିଃସଙ୍ଗତା ପୂର୍ବଠାରୁ ଢେର ବଢ଼ିଗଲା । ପହିଲୁ ପହିଲୁ ସ୍ୱାମୀ ନରହିବାଟା ତାକୁ ଖରାପ ଲାଗୁଥିଲା, ପରେ ଆସ୍ତେ ଆସ୍ତେ ତାର ମନେ ହେଲା, ଏହା ଏକପ୍ରକାର ଭଲ—ଗୋଟେ ପ୍ରକାର ମୁକ୍ତି ଯେ' ତା ପାଇଁ । ସ୍ୱାମୀ ପ୍ରତି ତାର ସେମିତି ଦରଦ କେବେ ବି ନଥିଲା । ସ୍ୱାମୀ ନଥିବାରୁ ତା ଉପରେ ଗରଗର ହେଲା ଭଳି ଜଣେ ଲୋକତ କମିଗଲା ।

ଦିନେ କାତେରୀନା ଛାତ ଉପର ଛୋଟ ଘରେ ଝରକା ପାଖରେ ବସି, ପର ପର ହାଇ ଛାଡ଼ୁଥିଲା । ବିଶେଷ କିଛି ଚିନ୍ତା କରୁଥିଲା, ତା ବି ନୁହଁ । କ୍ରମାଗତ ହାଇ ଛାଡ଼ିବାଟା ବି ତାକୁ ଲଜ୍ଜ୍ୟା ଲାଗୁଥିଲା । ସେ ପଟରେ, ବାହାର ଅଗଣାରେ ଚମତ୍କାର ଦିନଟି ଫୁଟି ଉଠିଛି, ଫୁଲ ଫୁଲ ଭଳି ଗରମ—ଏଇ ଖରମିଶା ଉଜ୍ଜଳ ଖୁବ୍ ମିଠା ଲାଗୁଥିଲା । ବଗିଚାର ସବୁଜ ପାଚେରୀ ଭିତର ଦେଇ କାତେରୀନା ଦେଖୁଥିଲା, ଛୋଟ ଛୋଟ ଚଞ୍ଚଳ ପକ୍ଷୀ ଗୁଡ଼ିକୁ କେମିତି ଗୋଟେ ଡାଳରୁ ଆଉଗୋଟେ ଡାଳକୁ ଫୁର୍ ଫୁର୍ କରି ଉଡ଼ୁଥିଲେ । କାତେରୀନା ଭାବୁଥିଲା, ଆଚ୍ଛା—ମୁଁ ଦିନସାରା ଟଣାହାଇ ମାରୁଛି କାହିଁକି ? କେଜାଣି···ତାଠାରୁ ଢେର୍ ଭଲ ପଦାକୁ ଯାଇ ବସେ କିମ୍ବା ବଗିଚାରେ ଘେରାଏ ବୁଲିଆସେ ।

ବୁଟିଦିଆ ଗୋଟେ ପୁରୁଣା ଜାମା ପିନ୍ଧି ପକେଇ ବାହାରି ପଡ଼ିଲା ।

ବାହାରେ ଉଜ୍ଜ୍ୱଳ ଆଲୁଅ ଆଉ ପବନ ଯେମିତି ନୂଆ ଜୀବନ ନେବା ପାଇଁ ବହୁଛି । ସେ ପାଖରେ ଗୋଦାମ ଘର ପାଖ ଉଚ୍ଚା ଚଉପାଢ଼ୀ ଉପରେ ସମସ୍ତେ ପ୍ରାଣ ଭରି ଖୁସୀରେ ଠୋ ଠୋ ହସୁଛନ୍ତି ।

ଏତେ ରଙ୍ଗେଇ କେଉଁଥିପେଇଁ ? କାତେରୀନା ତା ଶଶୁରଙ୍କ ' କିରାଣୀକୁ ପଚାରିଲା ।

ମା' ଠାକୁରାଣୀ ବେପାରଟା ହେଉଛି······ଆମେ ଗୋଟେ ଜୀଅନ୍ତା ମାଇ ଘୁଷୁରୀକୁ ଓଜନ କରୁଥିଲୁ— ।

—ମାଇ ଘୁଷୁରୀ, ସେ ପୁଣି କଣ ?

—ଏ...ଇ ଆକ୍‌ସୀନିଆ...ତା ପୁଅ ହେଇଥିଲା ଆମକୁ ଖାଇବାକୁ ଡାକି ନଥିଲ ବୋଲି— । ଜଣେ ଟୋକା ବେପରୁଆ ଦରହସା ଭବେ କହି ଉଠିଲା । ବେଶ୍ ସାହସୀ...ସୁନ୍ଦର ଚେହେରା । ମଚମଚ କଳା ବାଳ, ଅଳ୍ପ ଅଳ୍ପ ଦାଢ଼ି ନଗଦ ଗଜୁରୁଛି । ସେରଗେଇ ତା ନାଁ ।

ଏଇ ମୁହୂର୍ତ୍ତରେ ଦାଣ୍ଡରେ ଝୁଲୁଥିବା ମଇଦା ମାପ ଢମାରୁ ଉଙ୍କି ମାରିଲା ଗନ୍ଧୁଣୀ ଆକ୍‌ସୀନିଆର ଚର୍ବିଭରା ଚେହେରା ଆଉ ତା ଗୋଲପୀ ଗାଲ । ବଦମାସ୍ ଟୋକା, ଶୟିତାନ କାହାଁକା—ଗନ୍ଧୁଣୀ ତଥାପି ଗାଳି ବର୍ଷି ଯାଉଥିଲା । ସେ ଢମା ଭିତରୁ ଓଜନ କଣ୍ଟାର ଲୁହା ଜଞ୍ଜିରକୁ ଧରି ପଦାକୁ ବାହାରିବାକୁ ଚେଷ୍ଟା ଚଳେଇ ଥିଲା ।

ଖାଇବା ଆଗରୁ ତାର ଓଜନ ଥିଲା ପ୍ରାୟ ଚାରି ମହଣ । ଏଇନେ ଯଦି ଭଲକି ଛଣକୁଟା ଖାଆନ୍ତା ତେବେ ଆମର ସବୁ ବଟକରା ଖତମ ହେଇଯିବ ।

—ସେଇ ଚିକ୍‌କଣା ଟୋକାଟି ବୁଝେଇ ବୁଝେଇ ଉତ୍ତର ଦେଲା । ତା'ପରେ ଦଣ୍ଡିପଲାଟାକୁ ଓଲଟେଇ ଗନ୍ଧୁଣୀକୁ ତଳେ ପକେଇ ଦେଲା ଗୋଟେ ବସ୍ତା ଉପରକୁ ।

ଗନ୍ଧୁଣୀ ହସିହସି ନକଲି ରାଗରେ ଗାଳି ଦେଉଥିଲା ଆଉ ଶାଢ଼ୀଟାକୁ ସଜାଡ଼ି ନେଉଥିଲା ।

ଆଛା, ଭାବୁଛି ମୋର ଓଜନ କେତେ ହେବ ? ହସି ହସି କଣ୍ଟା ଜଞ୍ଜିରକୁ ଧରି କାତେରୀନା ପଚାରିଲା ।

ଶହେ ପନ୍ଦର ପାଉଣ୍ଡରୁ ସାମାନ୍ୟ କମ୍—ବଟକରା ପକେଇ ସେରଗେଇ ଉତ୍ତର ଦେଲା—ଆଶ୍ଚର୍ଯ୍ୟ !

ଏଥିରେ ଆଶ୍ଚର୍ଯ୍ୟ ହେବାର କଣ ଅଛି ?

ଆପଣ ଯେ ଏତେ ଟିକିଏ, ପୁଣି ଏତେ ଓଜନ ହେବେ ବୋଲି ମୁଁ ମୋଟେ ଭାବି ପାରୁନି— । ମୋର କଣ ମନେହୁଏ ଜାଣନ୍ତି ? ଆପଣଙ୍କୁ ଦୁଇ ହାତରେ ଟେକି ଦିନସାରା ଘୂରି ବୁଲନ୍ତି । ଏବଂ ଏଥିରେ ମୁଁ ଟିକିଏ ବି କ୍ଳାନ୍ତ ହେବି-ନାହିଁ...ବରଂ ଖୁସୀ ଲାଗନ୍ତା ।

ହଁ… ! ମୁଁ ତ ଆଉ ପାଞ୍ଚଜଣଙ୍କ ଭଳି ମାମୁଲି ମଣିଷ ନୁହଁ । ତୁମେ ବି ହାଲିଆ ହେଇଯିବ । …ଏ ଧରଣର କଥାବାର୍ତ୍ତା କରିବାକୁ କାତେରୀନା ଅଭ୍ୟସ୍ତ ନଥିଲା ବୋଲି ଉତ୍ତର ଦେବାପାଇଁ ତା ମୁହଁଟା ଟିକିଏ ନାଲି ପଡ଼ିଗଲା ଏବଂ ହଠାତ୍ ତାର ଗୋଟେ ଅଦମ୍ୟ ଇଚ୍ଛା ହେଲା ଟିକିଏ ହାତଖୋଲା ଖୁସୀ ହେବାକୁ…ରସରସିଆ କଥା କହି ତା ଶୃଙ୍ଖଳ ହୃଦୟକୁ ମନକୁ ଭରି ଦେବାକୁ ।

ସେରଗେଇ ସଙ୍ଗେ ସଙ୍ଗେ ଉତ୍ତର ଦେଇ ପକେଇଲା—କେବେ ବି ନୁହଁ… ଭଗବାନ ସାକ୍ଷୀ ରହିଲେ…ମୁଁ ଆପଣଙ୍କୁ ଆମ ଗୀର୍ଜା…ତାଠୁ ଆହୁରି ବେଶି ଦୂରଯାଏଁ ଟେକିନେଇ ଯାଇ ପାରିବି ।

ସାଦାସିଧା ପତଳା-ଦୋବଲା ଜଣେ ଚାଷୀ ମଇଦା ମାପୁ ମାପୁ କହିଲା—ସେ ହିସାବ ଚଳିବନି, ପୁଅ । ଆମର କା'ର କେତେ ଓଜନ ତାକୁ ନେଇ କଣ କଥା ଚଳେ ? ତୁ କଣ ମନେକରୁ ଆମର ମାଂସର ଦାମ୍ ଅଛି…ଓଜନ ଅଛି ! ଆମ ଭିତରେ ଯେଉଁ ବଳ ଅଛି ସେଇଟା ସବୁ କିଛି ପାରେ…ଆମ ମାଂସଟା କିଛି ନୁହଁ !

ପୁଣି କାତେରୀନା ନିଜକୁ ସଂଯତ କରି ନପାରି କହି ପକେଇଲା—ବାଃ ! ମୋର ବୟସ ଯେତେବେଳେ କମ୍ ଥିଲା ସେତେବେଳେ ମୋ ଦେହରେ ଥିଲା ବେଶି ଜୋର୍ । ସବୁ ପୁରୁଷ ମଣିଷମାନେ ମୋତେ ଲଢ଼ି ପାରୁ ନଥିଲେ, ଏ କଥାକୁ ମୂତପର୍କା ବୋଲି ଉଡ଼େଇ ଦିଅନି— ।

ସେରଗେଇ ନରମ ହେଇ କହିଲା—ଖୁବ୍ ଭଲକଥା । ତା' ଯଦି ହୁଏ ତେବେ ଆପଣଙ୍କ ଗ୍ରେଟ ହାତଟିକୁ ମୋତେ ଧରିବାକୁ ଦିଅନ୍ତୁ ତ— ।

କାତେରୀନା ହଡ଼ବଡ଼େଇ ଗଲା କିନ୍ତୁ ହାତଟା ବଢ଼େଇ ଦେଲା ।

କାଟୁଛି କାଟୁଛି ଓଃ ! ମୁଦିଟାକୁ ଘୁଞ୍ଚିଦିଅ । ସେଇଟା କାଟୁଛି ।

ସେରଗେଇ କାତେରୀନାର ହାତକୁ ଚିପି ଦେଲାକ୍ଷଣି ସେ ଚିତ୍କାର କରି ଉଠିଲା ଆଉ ଅନ୍ୟ ହାତରେ ଧକ୍କା ମାରିଦେଲା ଯେ ସେରଗେଇ ସଙ୍ଗେ ସଙ୍ଗେ ହାତ ଛୁଡ଼ୁ ଛୁଡ଼ୁ ଧକ୍କାରେ କେତେ ପାହୁଣ୍ଡ ଘୁଞ୍ଚିଗଲା ।

ସେଇ ଗ୍ରେଟକାଟ ସାଦାସିଧା ଚାଷୀଜଣକ ଅବାକ୍ ହୋଇ କହିଉଠିଲା—ହୁଃ ବେଟା ମଜା ପାଇଲୁ ତ…ସ୍ତ୍ରୀଲୋକ ବୋଲି ଫୁତ୍କାର ମାରିଥିଲୁ ନା ?

ସେରଗେଇ ମୁଣ୍ଡର ଚୁଳକୁ ଗୋଟେ ଝିଙ୍କାରେ ପଛକୁ ଠେଲିଦେଇ ଉଠୁ ଉଠୁ କହିଲା—ନା...ନା, ଆମର ଧରାଧରିଟା ଠିକ୍‌ଭାବେ ହେଇଯାଉ, ତେବେ ଯାଇଁ ।

କାତେରୀନା କହିଲା, ତେବେ ଆସି ଯା । ସେତେବେଳକୁ ତା ଦେହରେ ଗୋଟେ ଫୂର୍ତ୍ତି ଆସି ସାରିଥିଲା ।

କିନ୍ତୁ ସେ କଣ ଜାଣିଥିଲା ସତକୁ ସତ ସେରଗେଇ ତା ଦୁଇ ହାତକୁ ଭିଡ଼ି ନେଇ ତା ଛାତି ଭିତରେ ଟିକିଏ ଜାବୁଡ଼ି ଧରି ପକେଇବ ! କାତେରୀନା ସେଇ ଜାବ ଭିତରୁ ମୁକୁଳିବାକୁ ଚେଷ୍ଟା କରୁଥିଲା ବେଳେ ସେରଗେଇ ତାକୁ ଶୂନ୍ୟକୁ ଟେକି ଦେଇ ଧୀରେ ଧୀରେ ଛାତିବାଟେ କାତେରୀନାକୁ ଓହ୍ଲେଇ ଆଣି ଶେଷରେ ଗୋଟେ ଓଲଟା ଢମା ଉପରେ ବସେଇ ଦେଲା । ନିଜ ଜୋର୍ ଉପରେ ଯେଉଁ ଦମ୍ଭ କରୁଥିଲା ସେଥିରୁ ଗୋଟେ ରତିବି କାମରେ ଲଗାଇ ପାରିଲାନି କାତେରୀନା । ଏଥର ପାଚିକି ଲାଲଲାଲ୍ ହେଇ ଢମା ଉପରେ ବସି ବୁଟିଦିଆ ଜାମାକୁ ସଜାଡ଼ି ନେଲା । ତା'ପରେ ଚୁପ୍‌ଚାପ୍ ଗୋଦାମ ଘରୁ ବାହାରିଗଲା । ଦିମାଗି ଭଳି ଯେତିକି ଦରକାର ଠିକ୍ ସେତିକି ଦିମାକ୍‌ରେ ଗଳା ସଫାକରି ମଜୁରିଆଙ୍କ ଉଦ୍ଦେଶ୍ୟରେ ସେରଗେଇ ହାଙ୍କି ଉଠିଲା—ଏଃ ଗଧଙ୍କ ଦଳ ! ମଇଦା ଢାଳି ହେଇ ଯାଉଛି ସେଆଡ଼କୁ କା'ର ନଜର ନାଇଁ...ଆରମ ଖିଆ ଚାଲିଚି—ଆଁ !

ଏମିତି ଭାବରେ କହି ହେଲା ସତେ ଟିକିଏ ଆଗରୁ ଯାହା ଘଟିଗଲା ତା' ପ୍ରତି ପରବାୟ ନାଇଁ ।

କାତେରୀନା ପଛରେ ହାଁପେଇ ହାଁପେଇ ଚାଲୁଥିଲା ବେଳେ ରାନ୍ଧୁଣୀ କହୁଥିଲା, ଏତେ ଟିକେ ଟୋକା, ମାଇକିନାଙ୍କ ପଛରେ କି ରକମ ଅଣ୍ଡିରା କୁକୁର ଭଳି ଲାଗି ଜାଣେ ! ଏ ଶ୍ୱେରଟାର ନାହିଁ କଣ ? ଦେହ, ଚେହେରା, ମୁହଁ—ସବୁ ଦେଖିଲା ଭଳି ଅଛି । ଦୁନିଆରେ ଯେ କୌଣସି ମାଇପୀକୁ, ଏ ବଦମାସଟା ଏକ ଲହମାରେ ମାତ୍ କରିଦେବ, ତା'ପରେ ତାକୁ ଭୁଲେଇ ଭଲେଇ ଠେଲିଦେବ ନର୍ଦ୍ଦମାକୁ । କାହାକୁ ପ୍ରାଣ ଦେଇ ଭଲ ପାଇବା କଥା ଜୀବନରେ ଶିଖିଲାନି...ଏ ରକମ ହାଡ଼େ ହାଡ଼େ ଠକ ବଦମାସୀର ଯୋଡ଼ି ପାଇବନି ! ଆଗେ ଆଗେ ଚାଲୁଥିବା କାତେରୀନା ପଚାରିଲା—ଆଛା...କଣ କହିଲୁ—ହଁ...ତୋ ପୁଅଟା ବଞ୍ଚିଅଛି ତ ?

ବଞ୍ଚିଛି, ମା' ଠାକୁରାଣୀ ! ତାର ଆଉ ଚିନ୍ତା ନାଇଁ...ତାକୁ ଆଉ କିଏ ପଚାରୁଛି କି ନପଚାରୁ—

ପିଲଟା କାହାଆଡ଼୍—?

କିଏ ଜାଣେ, ହେଇତ ଗଲା···ବନ୍ଧୁବାନ୍ଧବ ମେଳାରେ ଥିଲେ ଏ ରକମର ହେଇଥାଏ··· ।

ଏ ଟୋକାଟା କେତେଦିନ ଏଠି କାମ କଲାଣି ?

କା' କଥା କହୁଛନ୍ତି ? ସେରଗେଇ ?

ହଁ ।

ମାସେ ହେବ । ଆଗେ ସେ କନ୍‌ଟନଫ୍ ପାଖରେ କାମ କରୁଥିଲା । ସେଠା ମାଲିକ ତାକୁ ତଡ଼ିଦେଲା । ତା'ପରେ ଧୀରେ ଧୀରେ କହିଲା, ଲୋକେ କହୁଛନ୍ତି, ସେ ସେଠି ତା ମାଲିକାଣୀ ସହିତ ଧନ୍ଦା କରୁଥିଲା···ନରକକୁ ଯାଉ ବଦମାସ୍‌ଟା···ସାହସ କମ୍ ନୁହଁ ତ !

ମିଠା ମିଠା ଗରମ, ଦୁଧ ଭଳି ସାଦା ପ୍ରାୟାନ୍ଧକାର ଓହ୍ଲେଇ ଆସୁଛି ସହର ଉପରେ । ପାଣି ଘେରି ବନ୍ଧ ମରାମତି କାମରୁ ଜିନଭିଚ ଏଯାଏ ଫେରି-ନାହାଁନ୍ତି । ସେଦିନ ରାତିରେ ଶଶୁର ଘରେ ନଥିଲେ । ତାଙ୍କର ଜଣେ ପୁରୁଣା ବନ୍ଧୁର ଜନ୍ମଦିନ, ବୁଢ଼ା ସେଠାକୁ ଯାଇଛନ୍ତି । କହି ଯାଇଛନ୍ତି ରାତିରେ ଘରେ ଖାଇବେନି, କେହି ତାକୁ ଅପେକ୍ଷା କରିବନି । ଆଉ କିଛି କାମ ନଥିବାରୁ ଶୀଘ୍ର ଶୀଘ୍ର ଘରକାମ ସାରିନେଇ ଉପର ଘର ଝରକା ପାଖରେ ଶୋଇ ଶୋଇ ବାଦାମରୁ ଚୋପା ଛଡ଼େଇଲା । ରୋଷେଇ ଘରୁ ମୂଲିଆମାନେ ଖାଇବା ପିଇବା ସାରି ନିଜ ନିଜ ବିଛଣାକୁ ଚାଲିଗଲେଣି । ରୋଷେଇ ଘରୁ ସବାଶେଷରେ ବାହାରିଲା ସେରଗେଇ । ସେ ପ୍ରଥମେ ଅଗଣା ଉପରେ ଖରକୁ ନିରୀକ୍ଷଣ କଲା । କୁକୁର ଗୁଡ଼ାକର ଚେନ୍ ଖୋଲିଦେଲା । ସିଟି ମାରି ମାରି କାତେରୀନା ଝରକା ତଳେ ଚାଲିଗଲା ବେଳେ ଉପରକୁ ଅନେଇ ମୁଣ୍ଡ ନଇଁ ଅଭିବାଦନ ଜଣେଇଲା ।

କାତେରୀନା ବି ମୃଦୁ ଅଭିବାଦନ ଜଣାଇଲା । ନିମିଷକ ଭିତରେ ବିରାଟ ଅଗଣାଟା ନିର୍ଜନ ପ୍ରାନ୍ତର ଭଳି ନିଃଶବ୍ଦ ହେଇଗଲା ।

ମିନିଟ୍ ହୁଇ ଯାଇଛି କି ନାହିଁ କାତେରୀନାର ଗ୍ରବିଦିଆ ବନ୍ଦ ଦରଜା ପାଖରେ କିଏ ଡାକିଲ—ମା' ଠାକୁରଣୀ !

କାତେରୀନା ଡରିଯାଇ ପଗ୍ରରିଲ—କିଏ ?

କିରଣୀ ଜଣେ ଉତ୍ତର ଦେଲ, ଦୟାକରି ଡରିବେନି । ମୁଁ...ମୁଁ ସେରଗେଇ ।

କଣ ଦରକାର, ତୁମର ।

ମୁଁ ଆପଣଙ୍କଠୁ ଦୟାଭିକ୍ଷା କରିବାକୁ ଆସିଛି...ମୋତେ ମିନିଟିଏ ପାଇଁ ଭିତରକୁ ଗ୍ଛଡ଼ନ୍ତୁ— ।

କାତେଷ୍ୱିନା ଗ୍ରବି ଖୋଲିଦେଲଗ୍ଛ ସେରଗେଇ ଘର ଭିତରକୁ ପଶି ଆସିଲ ।

କ'ଣ ହେଲ, କଣ ଗ୍ରହୁଁନ୍ତ ? ଝରକା ପାଖକୁ ଯାଇ କାତେରୀନା ପଗ୍ରରିଲ ।

ମୁଁ ଆସିଲି, ପଗ୍ରରିବାକୁ...କିଛି ବହିଫହି ଅଛି ପଢ଼ିବାକୁ । ମୋତେ ଦୟାକରି ପଢ଼ିବାକୁ ଦିଅନ୍ତୁ...ଏଠି ବଡ଼ ଏକୁଟିଆ ଲଗୁଛି ।

—ମୋ ପାଖରେ କୌଣସି ବହି ନାହିଁ...ମୁଁ ବି ପଢ଼େନା । ଖରି ଚିଢ଼ି ମାଡୁଛି ।

ସେରଗେଇ ଫେଗଦ କଲ, ଏକବାଗୀଆ ଜୀବନ !

—ତୁମର ଜୀବନ ଏକବାଗୀଆ ହେବ କାହିଁକି ?

ଅପଗଧ ଯଦି ନ ଧରିବେ, ନିବେଦନ କରୁଚି, ଏକବାଗୀଆ ଲଗିବନି କାହିଁକି ? କାତେଷ୍ୱିନା ନିସ୍ପୃହ ଗଳାରେ କହିଲ—ତୁମର କଣ ଅଛି ଖୋଲ ଆକାଶର ଚଢ଼େଇ...ମୋର କିନ୍ତୁ ଓଲଟା । ପାଞ୍ଚବର୍ଷ ପୂରି ନ' ଗ୍ରଲିଲ...ଏଠି ସତେ ମଠର ସନ୍ନ୍ୟାସୀନି ଭଳି ରହୁଛି । ଦିନେ ପଚି ସଢ଼ି ଖତମ୍ ହେଇଯିବି ସତେ— । ଦୀର୍ଘଶ୍ୱାସଟିଏ ଗ୍ଛଡ଼ିଲ କାତେଷ୍ୱିନା । ତାପରେ ସେରଗେଇକୁ ଲକ୍ଷ୍ୟକରି, ଆଉ ତୁମର ଅସୁବିଧା କଣ, ରୋଜଗାର କରୁଛ...ବୟସ ବି ହେଇଗଲଣି...କା'କୁ ବାହାସାହା ହେଇ ଘର କରୁନ— ।

ହଁ...ବାହା କଥା କହିବାଟା ସୋଜା...କାହାକୁ ବାହାହେବି ? ମୁଁ ସେଭଳି ଟଙ୍କାପଇସା ହାତରେ ରଖିପାରିନି...ପାଠପଢ଼ି ମୁଁ ବି ଭୁଲ୍ କରି ବସିଛି...ଆମ ଗରିବ ଲୋକଙ୍କ ଘରେ ପଢ଼ୁଆଝିଅ କୁଆଡ଼ୁ ଆସିବେ...ହେଇ ଦେଖୁନାହାନ୍ତି, ଆମ ଖାଉନ୍ଦ ଆପଣଙ୍କୁ ଗୋଟେ ପିଞ୍ଜରା ଭିତରେ ରଖିନ୍ତନ୍ତି...ଯାହାର କାନ ଅଛି ତାର ସ୍ମୃନା ନାହିଁ—ଆଉ ସ୍ମୃନା ଥିଲେ— ।

କାତେରୀନା ମୁହଁରୁ ଫସ୍‌କି ବାହାରି ପଡ଼ିଲା, କଥାଟା ପୂରା ସତ...ସତରେ ମୁଁ ଖୁବ୍ ନିଃସଙ୍ଗ ।

ମୁଁ ସେଇଥି ପାଇଁ କହୁଥିଲି, ଅନ୍ୟମାନଙ୍କ ଭଳି ଆପଣଙ୍କର କିଛି ଉପୁରି-ଟୁପୁରି ଥିଲେ ହୁଏତ...

ଧମକ ସ୍ୱରରେ କାତେରୀନା କହିଉଠିଲା—ଏ ତୁମେ ସୀମା ଟପିଯାଉଚ... ହଁ ସମସ୍ତେ କହୁଛନ୍ତି, ତୁମେ ବି କହିବନି କାଇଁକି...ଯଦି...ଯଦି ମୋର ଗୋଟେ ପୁଅ ଥା'ନ୍ତା ତା'ହେଲେ ଆଜି ତୁମେ ଏଭଳି କହିପାରିନଥାନ୍ତ— ।

ମୋତେ ଟିକେ କହିବାକୁ ଦିଅନ୍ତୁ, ପିଲା ଜନ୍ମ ହେବ କିଭଳି...କଣ ଆକାଶରୁ ଗଳିପଡ଼ିବ ! ମୁଁ ଆଖିରେ ବହୁତ ଦେଖିଛି...ଆମ ଏଠିକା ବହୁ ବଡ଼ବଡ଼ିଆଙ୍କ ଘରେ ବୋହୂମାନେ କିଭଳି ଜୀବନ କାଟନ୍ତି...ଗୋଟେ ଗୀତ ଅଛି—ଆପଣା ହୃଦୟରେ ନଥିଲେ ପ୍ରେମ...ଜୀବନ ଲାଗେ ବିଷମ ! ସେଇ କଥା କହିବାକୁ ମୁଁ ବାଧ୍ୟ ହେଉଛି...ଆପଣଙ୍କ ଦୁଃଖ ଦେଖି ମୋର ଏମିତି ମନ ହେଉଛି, ଛୁରୀରେ ମୋ ହୃଦୟଟାକୁ କାଟି ଆପଣଙ୍କ ପାଦତଳେ ଥୋଇ ଦିଅନ୍ତି କି...ହୁଏତ ଭଲ ହୁଅନ୍ତା— ।

ତୁମର ହୃଦୟ, ସେଟା ଅଛି ତ ? ହଉ ବେଶ୍ ହେଇଗଲା, ଏଥର ତୁମେ ଯାଇପାର ।

ଦୟା କରନ୍ତୁ ମାଦାମ୍ ! ସେରଗେଇ ସତେ ଟଳିଟଳି କାତେରୀନା ଆଡ଼କୁ ପାଦେ ପାଦେ ଆଗେଇ ଆସୁଛି । କାତେରୀନାର ବି ଛାତି ଧକ୍‌ଧକ୍ ହେବାକୁ ବସିଲଣି । ସେରଗେଇ କହିଛି ଧୀରେ ଧୀରେ—ମୁଁ ଜାଣିଚି ମାଦାମ୍ ! ହୃଦୟ ଅଛି ବୋଲି ଅନୁଭବ କରୁଛି...ସ୍ପଷ୍ଟ ଦେଖି ପାରୁଛି ଆପଣଙ୍କ ଜୀବନଟା ଠିକ୍ ମୋରି ଭଳି ନିଷ୍ଫୁପ ହେଇ ପବନରେ ଦୋହଲୁଚି...ତେବେ ଗୋଟେ କଥା, ଏଇ ମୁହୂର୍ତ୍ତରେ ସବୁ କିଛି ସମାଧାନ ହେଇପାରେ, ସେଇଟା ଆପଣଙ୍କ ହାତରେ ଅଛି— ।

କଣ ଗୁହଁ ତୁମେ ? ଏ ତୁମେ ଏସବୁ କଣ କରୁଛ ? ମୋ ଆଡ଼କୁ ମାଡ଼ି ଆସୁଛ କାହିଁକି ? ମୁଁ ଏଇନେ ଝରକା ବାଟେ ତଳକୁ ଡେଇଁ ପଡ଼ିବି ।

କାତେଶ୍ୱିନା ଏସବୁ କହୁଥିଲା ବେଳେ ତାକୁ ମାଲୁମ୍ ହେଉଥିଲା, କେମିତି ଗୋଟେ ଅବର୍ଣ୍ଣନୀୟ ଭୟ ତାକୁ ଅସହ୍ୟ ବଜ୍ରମୁଷ୍ଟିରେ ଚୁପି ଧରୁଛି । କାତେଶ୍ୱିନା ଭୟରେ ଝରକା ଚୌକାଠକୁ ଧରି ସାରିଲାଣି ସେତେବେଳକୁ । ସେରଗେଇ ତାକୁ ଝିଙ୍କି ନେଇ କାନ ପାଖରେ ଚୁପ୍‌ଚୁପ୍ କହିଲା—ମୋର ପ୍ରିୟତମା ! ତୁଳନାହୀନା ମୋ ଜୀବନସମା ! ଝରକା ବାଟେ ଡେଇଁବାରେ କଣ ଲଭ—

କହିସାରି ଜାବୁଡ଼ି ଧରିଛି କାତେଶ୍ୱିନାକୁ । କାତେଶ୍ୱିନା କାତର କଣ୍ଠରେ କହିଛି—ଓଃ ମୋତେ ଛାଡ଼...ଛାଡ଼ିଦିଅ । କିନ୍ତୁ ସେରଗେଇ ତା ଗାଲରେ ନିବିଡ଼ ଚୁମ୍ବନ ପରେ ଚୁମ୍ବନ ଦେଉଥିବାରୁ କାତେଶ୍ୱିନା ଅନୁଭବ କଲା ତା ଦେହରୁ ସମସ୍ତ ଶକ୍ତି ଲୋପ ପାଇ ଯାଉଛି । ନିଜର ଅନିଚ୍ଛା ସତ୍ତ୍ୱେ ତା ଦେହଟା କିନ୍ତୁ ସେରଗେଇ ଦେହ ସହିତ ମିଶି ଯାଉଥିଲା ।

ସେରଗେଇ ତା କିଛି ସମୟ ପରେ ଶୂନ୍ୟକୁ ଟେକି ନେଇ ଘରର ଆଉ ଗୋଟେ କୋଣକୁ ନେଇଗଲା, ସତେ ଛୋଟ ପିଲାଟିଏ ଭଳି ।

ଘରସାରା ନୀରବତା—କେବଳ କାନ୍ଥରେ ଟଙ୍ଗା ଯାଇଥିବା ତା ସ୍ୱାମୀ ପକେଟ୍ ଘଡ଼ିଟି ଟିକ୍ ଟିକ୍ କରୁଥିଲା । ତା ପାଖରେ ବାଧା ଦେଲାଭଳି କିଛି ନଥିଲା ।

ଯା, ଏଥର—ଅଧଘଣ୍ଟା ପରେ କାତେଶ୍ୱିନା ସେରଗେଇ ଆଡ଼କୁ ନ ଅନେଇ ଆଲୁଅ ଚୁଲକୁ ଛୋଟ ଆଇନା ସାମ୍ନାରେ ସଜାଡ଼ୁ ସଜାଡ଼ୁ କହିଲା ।

ଏଥର ଆଉ ଯିବି କୁଆଡ଼େ ? ସେରଗେଇ ମୁହଁରେ ଏଥର ଆପଣା ସ୍ୱର ।

ଶଶୁର ବୁଢ଼ା ସଦର ଦରଜା ବନ୍ଦ କରିଦେବେ, ସେତେବେଳେ ? କଣ କହିଲେ, ତୁମ ପାଖକୁ ଆସିବାକୁ ହେଲେ ଅଛି ଅନେକ ଦରଜା...ଯିବାପାଇଁ ବହୁତ ଝରକା...ଏତକ କହି ବାଲ୍‌କୋନି ଖୁଣ୍ଟକୁ ଧରି ଓହ୍ଲାଇ ଗଲା ସେରଗେଇ ।

ଜିନୋଭିଇ ସାତଦିନ ହେଲା ଘରକୁ ଫେରିନି ଆଉ ଏଇ ସବୁ ରାତିରେ ତା ସ୍ତ୍ରୀ ସେରଗେଇ ସହିତ ସରସଭାବରେ କଟାଇଛି ଶୁଭ୍ର ପ୍ରଭାତର ପ୍ରଥମ ଆଲୋକ ଆସିଲା ପର୍ଯ୍ୟନ୍ତ ।

ଏଇ ସାତଗତି ଧରି ଜିନୋଭିଇ ବରିସିଚର ଶୋଇବାଘରୁ ଶଶୁରଙ୍କ ଭଣ୍ଡାରରୁ ମଦ ପ୍ରଚୁର ପାନ କରଯାଇଛି, ପ୍ରଚୁର ମିଷ୍ଟାନ୍ନ ଖାଇବାକୁ ପଡ଼ିଛି ଏବଂ ତା ସହିତ କାତେରିନା ଓଠରୁ ମଧୁପାନ କରଯାଇଛି । କିନ୍ତୁ ପ୍ରାୟ କୌଣସି ଗପ୍ପା ଆଦ୍ୟରୁ ଅନ୍ତଯାଏ ମସୃଣ ନୁହଁ—ମଝିରେ ମଝିରେ ଧକ୍‌କା କଚଡ଼ା ଖାଇବାକୁ ପଡ଼େ ।

ବରିସ ତିମେତେଇଚଙ୍କ ଆଖିରେ ସେଦିନ ରାତିରେ ନିଦ ଆସୁ ନଥିଲା । ବୁଢ଼ା ରାତିର ଲମ୍ବା ରଙ୍ଗୀନ ଝୁଲରୁ ଏଘର ସେଘର ଘୁରୁଥିଲେ । ଝରକା ପାଖରେ ଆସି ଛିଡ଼ା ହେଲେ, ହଠାତ୍ ଆଖିକୁ ନଜର ହେଲା ଲାଲସାର୍ଟ ପିନ୍ଧା ସେଇ ସୁଦର୍ଶନ ଯୁବକ ସେରଗେଇ ତାଙ୍କ ପୁତ୍ରବଧୂ ଝରକାର ଗୋଟେ ରେଲିଂ ବାଟେ ତଳକୁ ଖସି ଯାଉଥିବାର ବରିସ ତିମୋତେଇଚ୍ ଝଡ଼ ବେଗରେ ବାହାରି ଯାଇ ମାଡ଼ିବସିଲେ ରସିକ ନାଗରଟିକୁ । ସେରଗେଇ ଭାବିଥିଲା ବୁଢ଼ାକୁ ଗୋଟେ ମୁଥି ମାରିବାକୁ—କିନ୍ତୁ କଣ ଭାବି ଚୁପ୍ ରହିଗଲା ।

ବରିସ ତିମୋତେଇଚ ପଚାରିଲେ—କହ, ଚୋରଙ୍କ ଭଳି ପଳାଉଥିଲୁ, କେଉଁଠୁ ?

ସେରଗେଇ ନିର୍ଲିପ୍ତଭାବେ ଉତ୍ତର ଦେଲା—ଯୁଆଡ଼େ ଯାଏ ସେଇଠିକି, କାଇଁକି, ସେଠି ତ ଆଉ ନାହିଁ···କଣ ହେଲା ବୁଢ଼ା ମହାଶୟ ! ମୋ ବୋହୂ ଘରେ ତୁ ରାତି କଟାଉଥିଲୁ ?

ଏ କଥାଟା ହିଁ ଯଦି ପଚାରିଲେ, ତାହେଲେ ଆଉଥରେ କହୁଛି···ଯାହା ହେଇଗଲାଣି ତାକୁତ ଆଉ ଫେରେଇ ହେବନାହିଁ । ଅଯଥାରେ କାଇଁକି ଗୋଟେ ଭଦ୍ର ପରିବାର ଭିତରକୁ ଫାଲ୍‌ତୁ ଝମେଲା ଟାଣିଆଣିବ···ଅନ୍ତତଃ ସେଟାକୁ ଚାପିରଖନ୍ତୁ । ମୋତେ ଏଥର ସିଧା କୁହନ୍ତୁ, ମୋତେ କଣ କରିବାକୁ ହେବ ।

ଏତେ ସାହସ ତୋର ! ତା'ହେଲେ ପାଞ୍ଚଶ ଚାବୁକ ପାହାର ଖା— ।

ସେରଗେଇ ସାହସୀ ନାଗର ଭଳି ଉତ୍ତର ଦେଲା—ହଉ ଆପଣଙ୍କ ଇଚ୍ଛା ପୂରଣ କରନ୍ତୁ, ଯାହା ଆପଣ ଚାହୁଁଛନ୍ତି ।

ବରିସ ସେତେବେଳେ ରାଗରେ ତାକୁ ଗୋଦାମଘର ଭିତରକୁ ଟାଣି ଟାଣି ନେଇଁ ବେଧଡ଼କ ଚାବୁକ ମାରିଲେ । ଯେତେବେଳେ ଆଉ ଚାବୁକ ମାରିବାର ଶକ୍ତି ଦେହରେ ନଥିଲା ତେବେ ଯାଇଁ ଥମିଗଲେ । ସେରଗେଇ ଗଳାରୁ କିନ୍ତୁ ଥରେ

ହେଲେ ଆର୍ତ୍ତସ୍ୱର ବାହାରି ନଥିଲା । କିନ୍ତୁ ରାଗରେ ଦାନ୍ତ କଡ଼ମଡ଼ କରି ନିଜ ସାର୍ଟରୁ ଖଣ୍ଡେ କୁଟ୍ କୁଟ୍ କରି ଦେଇଥିଲା ।

ସେରଗେଇ ତଳେ ପଡ଼ି ରହିଲା । ଚାବୁକମାଡ଼ ଯୋଗୁ ପିଠିଟା ତାର ରକ୍ତ ଝରଝର । ବୁଢ଼ା ଗୋଦାମ ଘର ଦୁଆର ମୁହଁରେ ତାଲା ଲଗେଇ ଲୋକ ପଠାଇଲା ପୁଅକୁ ଡାକିବାକୁ । କିନ୍ତୁ ଏଣେ ସେରଗେଇ ବିହୁନରେ କାତେରିନା ଅଧୀର । ତାର ସୁପ୍ତପ୍ରବୃତ୍ତିକୁ ପ୍ରତିରୋଧ କରିବାର କାହାରି ନଥିଲା । ଏପରି କି ନିଜଆଡ଼ୁ । ଖୋଜାଖୋଜି କରି ଶେଷରେ ପାଇଛି ଗୋଦାମ ଘରୁ ସେରଗେଇକୁ । ଶଶୁର ପାଖରେ ମିନତି କଲା, ସେରଗେଇକୁ ଛାଡ଼ିଦିଅନ୍ତୁ ।

ବୁଢା ମୁହଁର ରଙ୍ଗ ଟିକିଏ ସବୁଜ ହେଇଗଲା । ଏତେ ବେହିଆମୀର ଦୁଃସାହସ ତା ପୁତ୍ରବଧୂଠାରୁ ଆଶା କରି ନଥିଲେ ।

କହିଲେ—ଏ କଣ କଲୁ··· । ବୁଢା ଅଶ୍ଳୀଳ ଭାଷାରେ ମନଇଚ୍ଛା ଗାଳି-ଦେଲେ ।

ତାକୁ ଛାଡ଼ି ଦିଅନ୍ତୁ ବାପା । ମୁଁ ମୋ ବିବେକକୁ ସାକ୍ଷୀରଖି ଶପଥ କରୁଛି ଆମେ ଏପର୍ଯ୍ୟନ୍ତ କୌଣସି ପାପାଚାର କରିନାହୁଁ ।

ପାପାଚାର କରିନୁ ! ଓଃ···ଭଗବାନ ! ଏକଣ ଶୁଣୁଛି ? ବୁଢ଼ା ଆଉ କିଛି କହିପାରିଲେନି, କେବଳ ଦାନ୍ତ ଚାପି ରହିଗଲେ । ପଚାରିଲେ—ଏଇ କେହି ରାତିଧରି ତୁମେ ଉପରେ କିମିତି ସମୟ କାଟୁଥିଲ ?

କାତେରିନା କିନ୍ତୁ ନଛୋଡ଼ବନ୍ଧା—ସେଇ କଥା ବାରବାର କହିଛି—ତାକୁ ଛାଡ଼ି ଦିଅନ୍ତୁ··· ।

ବୁଢ଼ା ବିରସ କହିଲେ—ଏଇୟା ଯେବି ତୋର ଇଚ୍ଛା ତେବେ ଶୁଣିନେ, ତୋର ସ୍ୱାମୀ ଫେରିବା ପରେ ତତେ ଘୋଡ଼ାଶାଳକୁ ନେଇ ଆମେ ଦୁଇଜଣ ତତେ ଚାବୁକ ମାରିବୁ···ସତୀ ସାଧ୍ୱୀ ସ୍ତ୍ରୀ ତ ! ଆଉ ସେ ଟୋକାକୁ କଣ କରିବୁ ଜାଣୁ··· ତାକୁ ଜେଲ୍‌କୁ ପଠେଇବୁ ।

ସେଦିନ ରାତିରେ ବୁଢ଼ା ଖାଇ ସାରିବା ପରେ ତାଙ୍କ ଛାତିରେ ହଠାତ୍ ଯନ୍ତ୍ରଣା ବାହାରିଲା···ଛାତିରୁ ଯନ୍ତ୍ରଣା ଯାଇଁ ତଳପେଟରେ ଆରମ୍ଭ ହେଲା । କିଛି

ସମୟ ଭିତରେ ଜିଭ ପଦାକୁ ଦାହାରି ଆସିଲା ଓ ଭୋର ସମୟକୁ ବୁଢ଼ା ଇହଲୀଳା ସମ୍ବରଣ କଲେ । ଅବଶ୍ୟ ଏହା ପଛରେ ହାତ ଥିଲା କାତେରୀନାର । ମୂଷାମରା ବିଷକୁ ଅଟାରେ ମିଶେଇ ରୁଟି ତିଆରି କରିଥିଲା । ଏଇ ବିଷଗୁଣ୍ଡଟା କାତେରୀନା ହେପାଜତରେ ଥାଏ ।

ବୁଢ଼ା ପକେଟ୍‌ରୁ ଚାବିନେଇ ଗୋଦାମ ଘରୁ ସେରଗେଇକୁ ଡାକିନେଇ ତା ସ୍ୱାମୀ ବିଛଣାରେ ଶୋଇ ପକେଇ ଦରଜ ଓ ଘା ଭଲ ହେବାପାଇଁ ମାଲିସ୍ କରି ବସିଲା । ସେ ପଟରେ ଖ୍ରୀଷ୍ଟଧର୍ମାନୁସାରେ ବୁଢ଼ାର ଆଗ୍ରର ଅନୁଷ୍ଠାନ ସହ କବର ଦିଆଗଲା । ଅବଶ୍ୟ ବୁଢ଼ା ମୃତ୍ୟୁ ସମ୍ପର୍କରେ କାହାରି ସନ୍ଦେହ ହେଇ ନଥିଲା । ପୁଅକୁ ଅପେକ୍ଷା ନକରି ସଙ୍ଗେ ସଙ୍ଗେ କବର ଦିଆ ଯାଇଥିଲା । କାରଣ ପୁଅ ପାଖକୁ ବୁଢ଼ା ସେଦିନ ଯେଉଁ ଲୋକକୁ ପଠାଇଥିଲା ଜିନୋଭିଇକୁ ନ ପାଇ ଫେରି ଆସିସାରିଥିଲା ।

ଏହାପରେ ବେଲଗାମ୍ ଘୋଡ଼ାପରି ହେଇଗଲା କାତେରୀନା । ସେ କେବେ ବି ସ୍ୱାମୀରୁ ଖବର ନଥିଲା । କିନ୍ତୁ ତା ମନ ଭିତରେ କଣ ଯେ ଘଟୁଛି, ଏକଥା କେହି ଜାଣି ପାରିଲେନି । ପୂରା ହିମ୍ମତ ସହ ସେ କାରବାର କରୁଥିଲା । ଗୋଦାମ ଠୁ ଜମିବାଡ଼ି ସବୁ ଠିକ୍‌ଭାବେ ତଦାରକ କଲା । ସେରଗେଇ ସହ ମିଳାମିଶା ଦେଖି ମୂଲିଆଠୁ କିରାଣୀ ପର୍ଯ୍ୟନ୍ତ ସମସ୍ତେ ତାଜ୍ଜୁବ । କିନ୍ତୁ ଅନ୍ୟକୁ ବଶୀଭୂତ କରିବା କଳା କାତେରୀନାକୁ ବେଶ୍ ଜଣା ।

ସେପଟରୁ ଜିନୋଭିଇ ବରିସିଚ୍ ଘରକୁ ଫେରୁଛି ।

ଖିଆପିଆ ସରିଛି । ବାହାରେ ଦୁର୍ଦ୍ଦାନ୍ତ ଗରମ ଓ ଚଳଚଞ୍ଚଳ ଓସ୍ତାଦ ମାଛିମାନଙ୍କ ଉତ୍ପାତ ଅସହ୍ୟ ହେଇ ପଡ଼ୁଥିଲା । କାତେରୀନା ତା ଶୋଇବା ଘର ଝରକା ବନ୍ଦକରି ଗୋଟେ ଫ୍ଲାନେଲ କପଡ଼ାର ପର୍ଦ୍ଦା ଝୁଲେଇ ଦେଇଛି । ଖଟ ଉପରେ ସେରଗେଇ ସହ ନିର୍ବିକାର ଭାବେ ଶୋଇ ପଡ଼ିଲା । ଶୋଇବାକୁ ଇଛା ହେଉଥିଲେ ବି ଶୋଇପାରୁ ନଥିଲା । ତା ମୁହଁ ଝାଳେଇ ପଡ଼ୁଥିଲା । ନିଃଶ୍ୱାସପ୍ରଶ୍ୱାସ ସତେ ବହୁ କଷ୍ଟସହ୍ୟ କରିବାକୁ ପଡ଼ୁଥିଲା, ଏମିତି ଲାଗୁଥିଲା ।

ଏଥର ବୁଝି ପାରିଲା ଗ୍’ ପିଆ ବେଳ ଗଡ଼ି ଗଲଣି କିନ୍ତୁ ଉଠି ପଡ଼ିବାକୁ ମୋଟେ ବଳ ପାଉ ନଥିଲା । ଶେଷରେ ଘଣ୍ଟୁଣୀ ଆସି କବାଟରେ ଠକ୍‌ଠକ୍ ଶବ୍ଦକଲା ।

ପ୍ରଚଣ୍ଡ ପରିଶ୍ରମ କରି କଡ଼ ମୋଡ଼ିଲା, ତା’ପରେ ଗୋଟେ ବିଲେଇକୁ ଧରି ଗେହ୍ଲାକଲା । ଏହା ଭିତରେ ଗୋଟେ ଖାସା ସୁନ୍ଦର ମୋଟାସୋଟା, ଖଜଣା ଅସୁଲକାସ୍ତି ପିଆଦା ଭଳି ବିରାଟ ବିରାଟ ହଳେ ବାଦାମୀ ରଙ୍ଗର ବିଲେଇ କାତେଋିନା ଓ ସେରଗେଇ ମଝିରେ ଦେହ ଘଷା ଆରମ୍ଭ କରିଦେଲେଣି । କାତେଋିନା ସେଥିରୁ ଗୋଟାକୁ ଧରି ତା ଘନ ଲୋମ ଭିତରେ ଆଙ୍ଗୁଳି ଚଲଉ ଚଲଉ ଆଦର କରୁଥିଲା । ଆଉ ବିଲେଇଟା ତାର ପିରିକ ଛଟିଭଳି ମୁହଁ ଆଉ ଭୁଣ୍ଡା ନାକ ଦେଇ କାତେଋିନାର କଠୋର କୋମଳ ସ୍ତନଟିକୁ ଚପି ଦେଉଥିଲା ଏବଂ ବେଳେବେଳେ ସୁହାଗମିଶା ଘର୍ ଘର୍ ଶବ୍ଦ କରୁଥିଲା ।

କାତେଋିନା ଅବାକ ହୋଇ ଭାବୁଥିଲା, ଏଇ ମୋଟାସୋଟା ବିଲେଇଟା କଉଠି ଥିଲା, ଆଉ ଆଇଲା ବି କିପରି ! ଦୁଧସର ଟିକେ ଯତ୍ନରେ ରଖିଥିଲା, ଏଇ ପାଜି ବିଲେଇଟା ତାକୁ ଖତମ୍ କରିଦେବ ଯଦି...ଉଠିପଡ଼ି ବିଲେଇଟାକୁ ଯେତେ ତଡ଼ିଦେବାକୁ ଚାହିଁଲା, ସେତେ ସେ ହାତରୁ ଖସି ପଳେଇ ଯାଉଛି ।

ତା’ପରେ ଭାବିଲା, ଏଠି କଉ କଉ ଲାଶ୍‌ଫାଶ୍ ପଡ଼ିଛି କି, ଯେ ବଜ୍ଜାତ୍ ବିଲେଇଟା ଆଦୌ ଯାଉନି—କାହିଁକି ? କାତେଋିନା ଭଲକି ବୁଝିବାକୁ ଚେଷ୍ଟାକଲା, ଏ ବିଲେଇଟା ପୋଷା ବିଲେଇ କି ? କିମ୍ବା ନୁହଁ !

ହଠାତ୍ ସେ ଡରରେ ଥରିଉଠିଲା । ତା’ପରେ ଧଡ଼୍‌ପଡ଼୍ ଉଠି ଚାରିଆଡ଼କୁ ନଜର କରିଗଲା । କାହିଁ, କଉଠିତ ବିଲେଇର ନାମଗନ୍ଧ ଦେଖିବାକୁ ପାଉନି ! କେବଳ ସେରଗେଇ ତା ପାଖରେ ଶୋଇରହିଛି । ତା ମୁହଁଟା କାତେଋିନା ସ୍ତନ ପାଖରେ ଗୁଞ୍ଜି ଦେଇଛି ଯାହା ।

କାତେଋିନା ଏଥର ବିଛଣାରୁ ଉଠିପଡ଼ିଲା । ଚୁମ୍ବନ ପରେ ଚୁମ୍ବନ ସେରଗେଇ ମୁହଁରେ ଦେଇଗଲା । ତାର ଆଦରର ସତେ ଶେଷ ନାହିଁ । ତା’ପରେ ବଗିଚା ଆଡ଼େ ଚାଲିଗଲା ଚା’ କପ୍‌ଧରି । ସୂର୍ଯ୍ୟ ତଥାପି ଅସ୍ତାଚଳ ଭିତରୁ, ଉଷ୍ଣଗର୍ଭା ପୃଥିବୀ ଉପରେ ଶେଷ କିରଣତକ ଢାଳିଦେଇ ଲୁଚି ଯାଇଥିଲେ । ଓହ୍ଲେଇ ଆସୁଥିଲା ସୁନ୍ଦର ସମ୍ମୋହନୀ ସନ୍ଧ୍ୟା ।

ଫୁଲରେ ଫୁଲରେ ଢଙ୍କା ଆପେଲ ଗଛତଳେ ବସିରହିଲା କାତେଶ୍ବିନା । ଆକ୍‌ସୀନିଆକୁ କହିଲା, ବଡ଼ ବେଶି ନିଦ ହେଇଗଲା, ଉଠୁ ଉଠୁ ବେଳ ଗଡ଼ିଗଲା । ଚା' ପିଇନେଇ ଚାଲିଗଲା ଚଟାଣ ପୋଛୁ କନାଧରି ଘରଆଡ଼େ । ଗଲାବେଳେ ଗନ୍ଧୁଣୀକୁ ପଚାରିଲା, ଆଚ୍ଛା କହିଲୁ ଏସବୁର ଅର୍ଥ କଣ...ମୋ ସୁନାଟା ପଗ ?

କଣ ? କା'କଥା ପଚାରୁଛନ୍ତି ?

ସେଟା କଣ ଗୋଟେ ସ୍ବପ୍ନ ? କଉଠୁ ଗୋଟେ ପୋଷା ବିଲେଇ ବାରବାର ମୋ ଦେହସାରା ଘଷିଉଠୁଥିଲା । ବିଲେଇଟା ସତରେ ଗୋଟେ ପାଞ୍ଚଟା ବିଲେଇ ଭଳି ଜୀବନ୍ତ ! ଏହାର ମାନେ କଣ ?

ଏମିତି କଣ କହୁଛନ୍ତି ?

ସତଲେ, ବିଲେଇଟା ମୋ ଦେହ ଭିତରେ ଗୁଞ୍ଜି ଦେଉଥିଲା ତା'ମୁହଁ ।

ତାକୁ ଆଦର କଲେ କାହିଁକି ?

ମୋତେ ପଚାରୁଛୁ କଣ ଲେ ? ମୁଁ ନିଜେବି ଜାଣେନି, ତାକୁ ଆଦର କଲି କାହିଁକି !

ସତରେ ବଡ଼ ତାଜ୍ଜୁବ 'କଥାମ'— ।

ମୁଁ ବି ଭାବିପାରୁନି... ।

ତା'ହେଲେ କିଛି ଅମଙ୍ଗଳ ହେବ...କିମ୍ବା ଏଇଭଳି କିଛି— ।

ହଁ...ଏଟା ସତ କି ?

ଏହା ଉପରେ କେହି ସଠିକ୍ କହି ପାରିବେନି...ତେବେ ଆଗକୁ କିଛି ଅମଙ୍ଗଳ ହେଇପାରେ— ।

କାତେଶ୍ବିନା କହିଲା—ନିଦରେ ବାରବାର ଶୁକ୍ଲପକ୍ଷ ଫାଳୀ ଜହ୍ନ ଦେଖୁଛି ...ଆଉ ସେଇ ବିଲେଇଟା— ।

ଫାଳୀଜହ୍ନ ! ତା' ମାନେ ପୁଅ ହେବ ।

କାତେଶ୍ବିନାର ମୁହଁ ନାଲି ପଡ଼ିଗଲା ।

ସେରଗେଇକୁ ଡାକିଦେବି, ମା' ଠାକୁରାଣୀ ! କଳକଉଶଳ ଇଙ୍ଗିତ ଦେଲା ଆକ୍‌ସେନିଆ । ଅସଲରେ ସେ ବେଶି ବିଶ୍ବାସର ପାତ୍ରୀ ହେବାକୁ ନିଜକୁ ପ୍ରସ୍ତୁତ୍ କରୁଥିଲା ।

ହଉ··· ଡାକିଦେ···ମୁଁ ଚା' ଗରମ କରୁଛି ।

ଆକ୍‌ସାନିଆ ଚାଲିଗଲା ଡାକିବାକୁ । କିଛି ସମୟପରେ ଚା' ପିଇଲା ବେଳେ କାତେଝ୍ୱିନା ବିଲେଇ କଥାଟା କହିଲା ।

ସେରଗେଇ କହିଲା—କିଛି ନୁହେଁ, ଦିବାସ୍ୱପ୍ନ ମାତ୍ର ।

କିନ୍ତୁ ଆଗେ ତ କେବେ ଦିବାସ୍ୱପ୍ନ ଦେଖୁନି କାହିଁକି, ମତେ ବୁଝେଇ ଦିଅ ।

ଆଗେ କେବେ ଦେଖୁନ, ଏଇଟା ପ୍ରଥମ···ଆରେ ଏଭଳି ପ୍ରତିଦିନ ଘଟେ—ଘଟୁଛି । ଦିନଥିଲା ତୁମକୁ ଆଖିଟେକି ଦେଖିବାକୁ ସାହସ ମୋର ନଥିଲା । ଆଉ ଏଇନେ ସବୁକିଛି ବଦଳି ଯାଇଛି । ଏପରିକି ତୁମର ଏଇ ଶ୍ୱେତଶୁଭ୍ର ଦେହଖଣ୍ଡକ—ମୋର !

ମୋ ମୁଣ୍ଡ ଘୂରେଇ ପକଉଚି । ଏଇଠିକି ଆସିଲ । ମୋ ପାଖରେ ବସ । ସେରଗେଇ ପାଖରେ ବସିଲା ପରେ କାତେଝ୍ୱିନା କହିଲା—ମୋତେ ପାଇବାକୁ ତୁମେ କାତର ହେଇଯାଇଥିଲ ନା ?

—ତୁମେ ସେକଥା କଣ ଜାଣି ପାରିଛ !

ସେଟା କିମିତି, ମୋତେ କହିଲ ଦେଖି ।

ତାକୁ କିପରି ବୁଝେଇ ପାରିବି ? ଅପୂର୍ଣ୍ଣ ଆକାଂକ୍ଷା ଭିତରେ ମର୍ମବେଦନା କିପରି ତିଳ ତିଳ ଜଳିପୋଡ଼ି ଯାଇଥିଲା ତାକୁ କିଏ କଣ ବୁଝେଇ ପାରେ ? ମୋର ସେଇୟା ହେଉଥିଲା ।

ତା'ହେଲେ, ମୁଁ ସେତକ ଅନୁଭବ କରି ପାରିଲିନି କାହିଁକି ?

ସେରଗେଇ ନୀରବ ରହି କଥାଟାକୁ ଆଡ଼େଇ ଦେଲା ।

କାତେଝ୍ୱିନା ପୁଣି ପଚାରିଛି—ତା'ହେଲେ ତୁମେ ହରଦମ୍ ଗୀତ ଗାଉଥିଲ କିମିତି ? ଡରନାହିଁ···ମୁଁ ସବୁ ଜାଣେ । ତୁମେ ସେଇ ଉଚ୍ଚା ବାରଣ୍ଡାରେ ବସି ଗୀତ ଗାଅ, ମୁଁ ଶୁଣିଛି— ।

ଗୀତ ଗାଉଥିଲି, ସେଥିରେ କଣ ହେଲା ? ଗୋଟେ ମଶା ତ ଜୀବନସାରା ଗୀତ ଗାଏ—ସେଟା କଣ ଫୁର୍ତ୍ତି ଜୋର୍‌ରେ ? ବିରସ କଣ୍ଠରେ ଉତ୍ତର ଦେଲା ।

କିଛି ସମୟ ଦୁହେଁ ନୀରବ ରହିଲେ । ସେରଗେଇର ପୂର୍ବଗଗକୀର୍ତ୍ତନ କଥା ଶୁଣି କାତେଝ୍ୱିନାର ହୃଦୟ ଛଳଛଳ ହେଇଯାଉଥିଲା । ତାର ଇଚ୍ଛା ଆଉ କିଛି

ଗପସପ ହୁଅନ୍ତେ କିନ୍ତୁ ସେରଗେଇ ଯେମିତି ଚିଡ଼ି ଯାଇ ଚୁପ ହେଇ ବସି ରହିଥିଲା ।

ଆପେଲ ଗଛର ଶାଖା ପ୍ରଶାଖାର ପର୍ଦ୍ଦା ଭିତର ଦେଇ ସ୍ୱଚ୍ଛ ନୀଳାକାଶ ଆଉ ଶାନ୍ତପ୍ରଶାନ୍ତ ପୂନେଇ ଜହ୍ନ ଆଡ଼କୁ ଅନେଇ କାତେଖିନା ଆବେଗଭରା କଣ୍ଠରେ ପଗ୍ଭରିଲା—ଦେଖ ଦେଖ...ଏଇଟା ସ୍ୱର୍ଗପୁରୀ...ସ୍ୱର୍ଗପୁରୀରେ ସତେ ମେଳା ବସିଛି ।

କାତେଖିନା ଚିତ୍‌ହୋଇ ଶୋଇଥିଲା...ଜହ୍ନ କିରଣ ଆପେଲ ଗଛର ଫୁଲ ପତ୍ର ଭିତର ଦେଇ ଆସି ତା ମୁହଁରେ ବିଛୁରିପଡୁଥିଲା...ଆଉ ତା ସହିତ ଦେହ ଭିତରେ ଗୋଟେ ଶିହରଣ ଖେଳି ଯାଉଥିଲା । ପବନ ଯେମିତି ଅଳସୁଆ ହେଇଯାଇଛି...ମନରୁ ଅରୁଚି...ଆତ୍ମାର କଳୁଷ ଆଉ ମନ ଭିତରେ ଦୁର୍ବୋଧ ଯେତେ ସବୁ କାମନା ବାସନା...ପବନଟା ତାକୁ କାଢ଼ିନେଉନି !

କାତେଖିନା କୌଣସି ଇଶାରା ନପାଇ ପୁଣି ଚୁପ୍ ହେଇଗଲା, ଅନେଇ ରହିଲା ଫିକା ଗୋଲାପୀ ଆପେଲ ଫୁଲଫଳ ଗୁଚ୍ଛ ଭିତର ଦେଇ ଆକାଶ ଆଡ଼କୁ । ସେରଗେଇ ଚୁପ୍, ତା ମନକୁ ବିମୋହିତ କରିପାରୁନି ଖୋଲା ଆକାଶ । ଆଣ୍ଠୁ ଉପରେ ମୁହଁରଖି ନିଜ ଜୋତା ଆଡ଼କୁ ନଜର କରିଛି ।

ଆଃ ସୁନାର ତାରକସିରେ ତିଆରି ଏଇ ରାତିଟି । ଶାନ୍ତ, ଲଘୁ, ସୌରଭ-ଭରା ଆଉ ପ୍ରାଣଦାୟିନୀ ଈଷତ୍ ଉଷ୍ଣତା ! ଦୂର ବହୁଦୂରରେ, ଉପତ୍ୟକାର ପଛରେ ବଗିଚ୍ଚାଠୁ ବହୁ ଦୂରରେ କିଏ ଯେମିତି ଗାଇବସିଛି ସୁରେଲୀ ଗୀତ । ଘନ ଚେଷ୍ଟ୍-ଭର୍ତ୍ତି ବଗିଚ୍ଚାର ପାଚେରି ପାଖରୁ ଗାଇ ଉଠିଲା ଗୋଟେ କୋଇଲି—ଏଟା ତାର ପ୍ରଳାପ ? ଆଉ ସେତିକିବେଳେ ଘୋଡ଼ାଶାଳ ଦିଆଲ ପଛପଟୁ ଗୋଟେ ବିରାଟ ଘୋଡ଼ା ତନ୍ଦ୍ରାମିଶା ହ୍ରେଷାରବ ଛାଡ଼ିଲା...ଆଉ ବଗିଚ୍ଚା ବାହାରେ ଗୋଚରଣ ପଡ଼ିଆ ଉପର ଦେଇ ଦଳେ କୁକୁର ଦ୍ରୁତବେଗରେ ଛୁଟିଗଲେ...ଗୋଟେ ଛୁଇ ଅର୍ଦ୍ଧଭଗ୍ନ ପୁରୁଣା ପାଚେରି ସହିତ ବିଲୀନ ହେଇଗଲା ।

କହୁଣୀ ଉପରେ ଭର ଦେଇ କାତେଖିନା ଟିକିଏ ଉଠିପଡ଼ି ବଗିଚ୍ଚାର ଲମ୍ବାଲମ୍ବା ଘାସ ଆଡ଼କୁ ଅନେଇଲା—ଉଜ୍ଜ୍ୱଳ ଚନ୍ଦ୍ରକିରଣରେ ଘାସଗୁଡ଼ିକ ଚିକ୍‌ମିକ୍ କରୁଥିଲେ । ଜହ୍ନର କିରଣ ଯେମିତି ମତୁଆଲୀ ନର୍ତ୍ତକୀ ଭଳି ପ୍ରକୃତି ଉପରେ ନାଚିଯାଉଛି ।

କାତେଖିନା ମୁଗ୍‌ଧ ଭାବେ କହିଉଠିଲା—ଆହା କି ସୁନ୍ଦର— ।

ସେରଗେଇ ଗୋଟେ ତାଚ୍ଛଲ୍ୟ ଆଖିରେ ଥରେ ଅନେଇ ରହିଲା ।

ତୁମେ ଏମିତି ମନ-ମଗ ହେଇ ବସିଛ କାହିଁକି ଶୁଣେ ? ନା, ମୋ ଉପରୁ ତୁମ ମନ ଗୁଡ଼ି ଗଲଣି ?

କି ଆଜେବାଜେ କଥା କୁହ— । ନୀରସ ଗଳାରେ ଉତ୍ତର ଦେଲା ସେରଗେଇ । ତା'ପରେ ନଇଁପଡ଼ି କାତେରୀନାକୁ ଅଳସ ଭାବେ ଗୋଟେ ଚୁମା ଦେଲା ।

କାତେରୀନା ହୃଦୟରେ ହିଂସା ହେଉଥିଲା କହିଲା—ତୁମେ ମତେ ପ୍ରତାରଣା କରୁନ ତ ? ତୁମ ପ୍ରେମରେ ସ୍ଥିରତା ନାହିଁ, ମୁଁ ଜାଣେ ।

ସେରଗେଇ ଶାନ୍ତ କଣ୍ଠରେ କହିଲା, ତୁମେ ମୋତେ ଲକ୍ଷ୍ୟକରି ଏକଥା କହିଲ ବୋଲି ମୋର ବିଶ୍ୱାସ ହେଉନାହିଁ !

ତା'ହେଲେ ମୋତେ ଏଭଳି ଚୁମା ଦେଲ କାହିଁକି ?

ତାଚ୍ଛଲ୍ୟ ଭାବରେ ଚୁପ୍ ରହିଲା ସେରଗେଇ । କାତେରୀନା ତାର କୁଞ୍ଚୁକୁଞ୍ଚୁ ଚୂଳ ଭିତରେ ଖେଳିବସିଲା । ପୁଣି କହିଛି, ସ୍ୱାମୀ-ସ୍ତ୍ରୀ ପ୍ରତ୍ୟେକଙ୍କୁ ଏଇଭଳି ଚୁମା ଦିଅନ୍ତି...ସତେ ଓଠରୁ ମଇଳା ପୋଛିଦେଲା ଭଳି ! ତୁମର ଚୁମାଟା ସତେ ଆପେଲ ଗଛରୁ କାକର ପଡ଼ିଲା ପରି !

ହଁ...ହଁ ଠିକ୍ ଏଇରକମ୍...ଏଇ ରକମ୍...। କାତେରୀନା ଜାବୁଡ଼ି ଧରି ସେରଗେଇ କାନ ପାଖରେ ଚୁପ୍‌ଚୁପ୍ କହିଲା ।

କିଛି ସମୟ ପରେ କାତେରୀନା କହିଲା, ଏଥର ଯାହା କହିବି ମନଦେଇ ଶୁଣ । ଆଚ୍ଛା କହିଲ—ସମସ୍ତେ କହନ୍ତି, ତୁମ ପ୍ରେମର ସ୍ଥିରତା ନାହିଁ !

ମୋ ସଂପର୍କର କୁକୁରର ଘ୍ୟାଉଁ ଘ୍ୟାଉଁ ଭଳି ଏମିତି କିଏ କହେ ?

ସମସ୍ତେତ କହିଛନ୍ତି ।

ହୁଏତ ସେମାନଙ୍କୁ ହାଡ଼େ ହାଡ଼େ ଚିହ୍ନି ସାରିଛି ଆଉ ଗୁଡ଼ି ଦେଇଛି ବୋଲି—ଏମିତି କୁହନ୍ତି ।

ଆରେ ବାବା ! ଏଭଳି ଅପଦାର୍ଥଙ୍କ ସହିତ ଜଡ଼େଇ ପଡ଼ିବାକୁ ତୁମର କଣ ଦର୍କାର ଥିଲା ? ଯେଉଁ ସ୍ତ୍ରୀ ସତରେ ଅପଦାର୍ଥ ତାଙ୍କ ସହିତ ପ୍ରେମ କରିବାକୁ ଯାଅ କାହିଁକି ?

କୁହ, କହିଯା'...କହିବାଟା ଖୁବ୍ ସହଜ । ମଣିଷ କଣ ସୂକ୍ଷ୍ମ ବିଗ୍ଭର ବିବେଚନା କରି ପ୍ରେମରେ ପଡ଼େ ? ଏହା ପଛରେ କାମ କରେ ଏକମାତ୍ର ପ୍ରଲୋଭନ । ତାଙ୍କ ସହିତ ଶାସ୍ତ୍ରକଥିତ ବିଧିରୁ ଗୋଟିଏ ଭଙ୍ଗକଲେ, କଥା ସରିଗଲା । ତା'ପରେ ସେ ଝୁଲି ରହିଲା ତୁମ ବେକରେ ! ଖାଇବା ଶୋଇବା ଭଳି ତାଙ୍କର ସେଇ ପ୍ରେମ !

ତା'ହେଲେ...ଶୁଣ, ମୋ ସହିତ ଆଗରୁ କେହି ନଥିଲେ...ତେବେ ତୁମେ ପ୍ରଥମ ବ୍ୟକ୍ତି ମୋତେ ଏଇ ପ୍ରେମ ରାସ୍ତାକୁ ଡାକି ଆଣିଛ । ତାହା ତୁମେ ଭଲ-କରି ଜାଣିଛ...ତୁମେ ନିଜେ ପ୍ରଲୋଭିତ କରି ନେଇ ଆଣିଛ...ମୁଁ ବି ପାଦ ରଖି ସାରିଛି; ତା ପାଇଁ ତୁମ ଛଳ କଉଶଳ ଯେତିକି ଦାୟୀ ମୁଁ ବି ଦାୟୀ ସେତିକି...ମୁଁ ତୁମକୁ କଥା ଦେଉଛି, ତୁମେ ଯେବେ ମୋତେ ବେଇମାନ୍ କର...ତୁମେ ଅନ୍ୟ କା' ସହିତ...ସେ ଯିଏ ହେଉ...ମୋତେ ବର୍ଜନ କର...ମୁଁ କସି୍ନକାଳେ...ମୋତେ ମାଫ୍ କର...ଏ ଦେହ ପ୍ରାଣ ଥିବା ପର୍ଯ୍ୟନ୍ତ ତୁମକୁ ଛାଡ଼ିବାକୁ ଦେବିନି ।

ସେରଗେଇ ଚମକି ପଡ଼ିଲା । ଏମିତି କଣ କହୁଛ, ମୋ ଅବସ୍ଥାଟାକୁ ଟିକେ ଥରେ ଚାହିଁ ଦେଖ । ତୁମେ ଏତେବେଳ ଯାଏ ମୋତେ ଅନ୍ୟମନସ୍କ ହେବାର ଦେଖି ଆସିଛ...ତୁମେ ଶାନ୍ତ ହେଇ ଭାବି ଦେଖ...ଏଇ ଆନମନା ହେବାଟାକୁ ମୁଁ ତେଇଁ ପାରୁଛି କି ନା । ତୁମେ ଜାଣିନ, ମୋ ଛାତି ଭିତରେ କେତେ ରକ୍ତର ଠୋପା ଜମା ହୋଇ ରହିଛି ।

ତୁମର କଣ କଷ୍ଟ, ମତେ କୁହ— ।

ଏକଥା କହିବାରେ କଣ ଅଛି । ପ୍ରଥମତ ଦେଖ, ଅଳ୍ପଦିନ ଭିତରେ ଈଶ୍ୱରଙ୍କ ଆଶୀର୍ବାଦରେ ତୁମ ସ୍ୱାମୀ ଆସିଯିବେ...ତୁମେ କହିବ, ଦୂର ଦୂର ହଅ... ଏଣିକି ଯାଇ ସେଇ ଚଉପାଢ଼ୀ ଉପରୁ ଗୀତ ଗାଅ...ସେଇଠୁ ଆଖି କାଢ଼ି ଅନାଇ ଦେଖ୍, ମୋ ଶୋଇବା ଘରେ ମୋ ସ୍ୱାମୀ ସହିତ କେମିତି ଆରମରେ ଶୋଇ ପାରୁଛି ।

ଅସମ୍ଭବ ! ଏ ରକମ୍ କଥା କେବେ ବି ହେବନାହିଁ । ଟଣାଟଣା ସ୍ୱରରେ କାତେରିନା କହି ଉଠିଲା ।

କାହିଁକି ହେବନି ? ମୁଁ ଯାହା ଦେଖି ପାରୁଛି, ଏ ପରିସ୍ଥିତିରୁ ତୁମେ ବାହାରିବାକୁ ଟିକିଏ ବି ରାସ୍ତା ନାହିଁ । ତା ସତ୍ତ୍ୱେ, ମୋର ଗୋଟେ ଆପଣାର ହୃଦୟ ଅଛି, ମୁଁ ସେଇଥିରୁ ଅନୁଭବ କରିପାରୁଛି ।

ବାସ୍...ବାସ୍...ଯଥେଷ୍ଟ ହେଇଗଲା । ଚୁପ୍ ରୁହ, ମୁଁ କହୁଛି । ସେରଗେଇର ଏଇ ହିଂସୁକ ଅନୁଭୂତିଟା କାତେରୀନାକୁ ବେଶ୍ ଭଲ ଲାଗିଲା । ଜୋରରେ ହସିଉଠି ପୁଣି ଥରେ ସେରଗେଇକୁ ଜାବୁଡ଼ି ଚୁମା ଦେଲା ।

ଅତି ସାବଧାନରେ କାତେରୀନାର ଅନାଛାଦିତ ବାହୁପାଶ ଭିତରୁ ନିଜର ମୁଣ୍ଡଟିକୁ କାଢ଼ି ନେଉ ନେଉ କଥାର ଖିଅଧରି କହିବାକୁ ଲାଗିଲା—ଦ୍ୱିତୀୟତଃ, ସମାଜରେ ମୋର ଯେଉଁ ହୀନତମ ଅବସ୍ଥା ସେଇଟା ମୋତେ ବହୁବାର ବାଧା ଦେଉଛି, ବ୍ୟାପାରଟାକୁ ଭଲକି ବିବେଚନା କରିବାକୁ । ମନେକର, ମୁଁ ଯଦି ସମାଜରେ ତୁମ ଧାପ ଭଳି ମଣିଷ ହେଇଥାନ୍ତି, ମୁଁ ଯଦି ଭଦ୍ରଲୋକ ବା ବ୍ୟବସାୟୀ ହେଇଥାନ୍ତି, ତା'ହେଲେ ଏ ଦେହରେ ଯେତେ ସମୟ ପ୍ରାଣ ଥିବ ତୁମକୁ କିଛିବୋଲି ଛାଡ଼ି ଦେବାକୁ ରାଜି ହୁଅନ୍ତି ନାହିଁ— । କିନ୍ତୁ ଏଇନେ ଯାହା ପରିସ୍ଥିତି, ତୁମେ ନିଜେ ବି ଭାବି ଦେଖ—ତୁମ ପାଖରେ ଛିଡ଼ାହେଲେ, ମୁଁ କିଏ ? ଅଳ୍ପଦିନ ଭିତରେ ତୁମର ସ୍ୱାମୀ ଯେତେବେଳେ ତୁମ ଶ୍ୱେତ ଧଳା ହାତକୁ ଧରି ତୁମ ଶୋଇବା ଘରକୁ ନେଇଯିବେ, ମୋତେ ସେଟାକୁ ନୀରବରେ ସହି ନେବାକୁ ପଡ଼ିବ ଏବଂ ହୁଏତ ସେଇ କାରଣରୁ ମୁଁ ନିଜକୁ ବାକୀ ଜୀବନ ଧରି ଘୃଣା କରିବି । ବୁଝୁଛ ? ମୁଁ ତ ସେ ଦଳର ନୁହଁ ଯେଉଁମାନେ ଯେ କୌଣସି ଗୋଟେ ନାରୀ ସହିତ ଫୂର୍ତ୍ତି କରି ପାରିଲେ ଅନ୍ୟ କିଛିକୁ ପରବାୟ କରନ୍ତିନି । ପ୍ରେମ, ସତ୍ୟ...ସତ୍ୟ କଣ ସେ ଅନୁଭୂତି ମୋର ଅଛି, ଆଉ ସେଇଟା ଯେମିତି କାଳନାଗୁଣୀ ଭଳି ମୋ ଛାତିରୁ ରକ୍ତ ଶୋଷି ଶୋଷି ଖାଉଛି !

କାତେରୀନା ବାଧା ଦେଇ କହିଲା, ଏସବୁ କଥା ତୁମେ ମୋତେ ବାରବାର ବୁଝେଇ କହୁଛ କାହିଁକି ?

ନ କହିଲେ...କଣ କରିବି କୁହ । ହୁଏତ ଏଇ ସମୟରେ ତୁମ ସ୍ୱାମୀକୁ ସବୁ କିଛି କାଗଜ କଲମରେ ଭଲ କି ବୁଝେଇ ରିପୋର୍ଟ କରାଯାଇ ସାରିଛି... । ଖୁବ୍ ବେଶି ଡେରି ନାହିଁ...ତା'ପରଠୁ ସେରଗେଇକୁ ଦେଖିବାକୁ ମିଳିବନି କିମ୍ବା ତା କଣ୍ଠସ୍ୱର ଶୁଣିବାକୁ ପାଇବନି ।

ନା...ନା, ସେସବୁ ନେଇ କିଛି କୁହନା । ଏଟା ତୁମକୁ କସ୍ମିନ୍‌କାଳେ ହେବାକୁ ଦେବିନି । ଯାହା ତାହା ହେଉ, ତୁମକୁ ଛାଡ଼ି ମୁଁ ତିଳେ ବି ରହି ପାରିବିନି । କହିସାରି ଚୁମ୍ବନ ଓ ସୁହାଗରେ ସେରଗେଇକୁ ପ୍ରବୋଧନା ଦେବାକୁ ଲାଗିଲା । —ଚୂଡ଼ାନ୍ତ ନିଷ୍ପତ୍ତି ଯଦି ଦିନେ ନେବାକୁ ସମୟ ଆସେ...ତେବେ ନିୟତି ତାକୁ ସେପାରି ନେଇଯିବ...ନଚେତ୍ ମୋତେ କିନ୍ତୁ ତୁମକୁ ମୋଠୁ କିଏ ଛଡ଼େଇ ପାରିବନି ।

ସେଟା ସମ୍ଭବ ନୁହଁ··· । ବିଷର୍ଣ୍ଣ କଣ୍ଠରେ ସେରଗେଇ ଉତ୍ତର ଦେଲା । ତା'ପରେ ମୁଣ୍ଡରେ ଗୋଟେ ଝାଙ୍କ୍ ଦେଇ କହିଲା, ମୁଁ ଏଇ ପ୍ରେମକୁ ନେଇ ବଞ୍ଚିଛି···ତା ପାଇଁ ମୋର ନିଜର ବି ଦୁଃଖ ହୁଏ···ସମାଜରେ ମୁଁ ଯେଉଁ ଧାପରେ ଅଛି ସେଇ ଧାପର କାହାକୁ ଭଲ ପାଇଲେ ହୁଏତ ମୁଁ ସନ୍ତୁଷ୍ଟ ହୁଅନ୍ତି । ଏଟା କଉ ସମ୍ଭବ ଯେ ତୁମେ ଚିରକାଳ ମୋତେ ସତରେ ଭଲପାଇ ବସି ରହିବ ? ଆଉ ଏଇକ୍ଷଣି ମୋ ପ୍ରଣୟିନୀ ହେଇ ରହିବା କଣ ତୁମ ପକ୍ଷରେ ଗୌରବର ବିଷୟ ? ମୁଁ ଚାହେଁ ଚିରନ୍ତନ ପ୍ରେମ ମନ୍ଦିର ଧାମ୍ନାରେ ତୁମର ସ୍ୱାମୀ ହେବାକୁ···ତାପରେ ତୁମ ତୁଳନାରେ ମୁଁ ହୀନ ହେଲେବି, ମୁଁ ସମାଜକୁ ଛାତି ଚିରି ଦେଖେଇ ପାରିବି— ମୋ ସ୍ତ୍ରୀ ମୋତେ କେତେ ସମ୍ମାନ ଦିଏ···କାରଣ ମୁଁ ତାକୁ ସମ୍ମାନ କରେ— !

ସେରଗେଇର କଥାଗୁଡ଼ାକ କାତେରୀନାର ମୁଣ୍ଡ ଘୂରେଇ ଦେଇଛି । ତାର ଈର୍ଷା, କାତେରୀନାକୁ ବାହା ହେବାକୁ—ଏ କାମନା ପ୍ରତି ନାରୀ ପାଖରେ ବଡ଼ ପ୍ରିୟ । କାତେରୀନା ଏଇନେ ସେରଗେଇ ପାଇଁ ନିଆଁ ଭିତରେ ଯିବାକୁ ପ୍ରସ୍ତୁତ୍, ଅତଳ ତଳକୁ ଯିବାପାଇଁ ପ୍ରସ୍ତୁତ୍ କିମ୍ବା ଭୟଙ୍କର କାରାଗାର କିମ୍ବା କ୍ରୁଶବିଦ୍ଧ ହେଇ ମରିବାକୁ ପ୍ରସ୍ତୁତ୍ ।

ସେରଗେଇର ମୁହଁ ଚାପି ନିଜ ଛାତି ଉପରେ ଚାପି ଧରିଛି କାତେରୀନା— ଶୁଣ, ମୁଁ ସବୁ ଜାଣିଗଲି, ତୁମେ କେମିତି ବ୍ୟାବସାୟ କରିବ ଆଉ ତୁମ ସହିତ ଯଥା ସମ୍ମାନ ସହ ବାସ କରିହେବ···ଯେତେଦିନ ମୋ ଅବସ୍ଥାର ଚରମ ବୁଝାବୁଝି ସମୟ ଆସିନାହିଁ ସେତେଦିନ ପର୍ଯ୍ୟନ୍ତ ମୋତେ ଆଉ ଏଇଭଳି କହି କଷ୍ଟ ଦିଅନି ।

ତାପରେ କିଛି ସମୟ ଚୁମ୍ବାପର୍ବ ଚାଲିଲା । ଅବଶେଷରେ କାତେରୀନା କହିଲା—ଚାଲ, ଶୋଇବାକୁ ଯିବା । ଶାୟିତ ଅବସ୍ଥାରେ ସେଇ ସାମାନ୍ୟ ଶେମିଜ୍ ଆଉ ସାଦା ସାୟା ପିନ୍ଧିଥିଲା । ସେଇ ବେଶରେ ଗଣ୍ୟମାନ୍ୟ ସୌଦାଗର ଘର ଅଗଣା ଉପରେ ସେ ଚାଲିଲା । ଚାରିଆଡ଼େ ମଲଘରର ନିଶ୍ଚଳତା ଆଉ ନିଃଶବ୍ଦତା । ସେରଗେଇ କାତେରୀନାର ଦେହରୁ କାଢ଼ି ଫୋପାଡ଼ି ଦେଇଥିବା ବ୍ଲାଉଜ୍-ଶାଢ଼ୀକୁ ଗୋଟେଇ ପଛେ ପଛେ ଚାଲିଲା ।

ଶାଢ଼ୀ-ସାୟା ଆଉ ଦେହର ଶେଷ ବସ୍ତ୍ରଟକ କାଢ଼ି ପକେଇ, ମହମବତୀକୁ ଲିଭେଇ ପକ୍ଷୀପର ଭଳି ମୁଲାୟମ ବିଛଣାରେ ଶୋଇ ପଡ଼ୁ ପଡ଼ୁ କାତେରୀନା ସୁଗନ୍ଧି ଗନ୍ଧର ଭିତରେ ସମ୍ପୂର୍ଣ୍ଣ ବିଲୀନ ହୋଇଗଲା ।

ଦିନସାରା କ୍ରୀଡ଼ା କୌତୁକ ଆଉ ଉଲ୍ଲାସ ରସରୁ ଏତେ ଆକଣ୍ଠ ପାନ କରିଥିଲା ଯେ, ତା ଗୋଡ଼ ଦୁଇଟି ଘୁମେଇ ପଡ଼ିଲା, ହାତ ବି ଘୁମେଇ ପଡ଼ିଲା । କିନ୍ତୁ ସେଇ ଘୁମେଇବା ଭିତରେ ସେ ପରିଷ୍କାର ଦରଜା ଖୋଲିବାର ଶବ୍ଦ ଶୁଣି ପାରିଲା ଆଉ ସେଇ ଚିହ୍ନା ବିଲେଇଟା ଢୁମ୍ କରି ତା ବିଛଣା ଉପରେ ପଡ଼ିଗଲା ।

ବିଲେଇଟା ଏମିତି ଆସିବା ଭିତରେ କଣ ମାନେ ? କ୍ଳାନ୍ତ କାତେରୀନା ଆପଣା ମନରେ ଯୁକ୍ତି-ତର୍କ କରି ବସିଲା । ମୁଁ ଦରଜାରେ ନିଜ ହାତରେ ଚାବି ଲଗେଇଛି...ଝରକାଟା ବି ଭିତରୁ ବନ୍ଦ୍...ତେବେ ଦେଖି ଆସେ...ଟିକେ ରହ ମୁଁ ସେଟାକୁ ପଦାରେ ଛାଡ଼ିଦେଇ ଆସେ— ।

କାତେରୀନା ଉଠିବାକୁ ଯାଉଥିଲା କିନ୍ତୁ ପାରିଲାନି । ବିଲେଇଟା ତା ଦେହ ସାରା ତିଆଡିଇଁ କରୁଛି ଏବଂ ତାର ଗର୍‌ର୍ ଗର୍‌ର୍ ଟା ଏମିତି ଆଶ୍ଚର୍ଯ୍ୟ ରକମର ଯେ, ସେ ଯେମିତି ମଣିଷ ଭଳି କଥା କହୁଥିଲା ।

କାତେରୀନା ମନସ୍ଥିର କରି କହିଲା, ନାଃ, କାଲି ମୋତେ ବିଛଣା ଉପରେ ମନ୍ତ୍ରର ପାଣି ଛାଟିବାକୁ ପଡ଼ିବ—ଏହାଛଡ଼ା ଆଉ କୌଣସି ଗତି ନାହିଁ... ଯେଉଁଭଳି ବିଲେଇଟା ଭୂତ ଭଳି ମୋ ପଛରେ ଲାଗିଛି ସେଥିରୁ ସ୍ପଷ୍ଟ ବୁଝା ପଡ଼ୁଛି—ଏଟା ଗୋଟେ ଅଜବ ଧରଣର ବିଲେଇ !

ବିଲେଇଟା ସୁହାଗ କଲାଭଳି ତାର କାନ ପର୍ଯ୍ୟନ୍ତ ଚାଲି ଯାଇଛି । ପିଠିକି ଛେଚି ମୁହଁ ଆଉ ଭୁଣ୍ଡା ନାକଟା ତା ଦେହ ଉପରେ ଚାପି ଦେଇ କହିଲା—ଆଚ୍ଛା ! ମୁଁ କଉ ଧରଣର ବିଲେଇ, ସେଇ କଥାଟା ଭାବୁଛ, ନା ? କିନ୍ତୁ ଏ ସନ୍ଦେହ ଆଇଲା କେଉଁଠୁ ? ସତରେ, ତୁମେ ଅସମ୍ଭବ ଚାଲାକ ଝିଅ । ଠିକ୍ ଧରି ପାରିଛ ମୁଁ ପ୍ରକୃତରେ ବିଲେଇ ନୁହଁ—କାରଣ ମୁଁ ଅସଲରେ ଆଉ କେହି ନୁହଁ—ମୁଁ ହେଉଛି ସେଇ ବିଖ୍ୟାତ ସମ୍ମାନିତ ସୌଦାଗର ବରିସ୍ ତିମୋତେଇଚ୍ । ଅବଶ୍ୟ ଏଟା ହକ୍ କଥା ଯେ, ଠିକ୍ ଏଇ ମୁହୂର୍ତ୍ତରେ ମୁଁ ଖୁବ୍ ଭଲ ଅବସ୍ଥାରେ ନାହିଁ—କାରଣ ମୋ ପୁତ୍ରବଧୂ ମୋତେ ଯେଉଁ ଖାଦ୍ୟ ଖାଇବାକୁ ଦେଇଥିଲା, ତା' ଫଳରେ ମୋ ନାଡ଼ି...ମୋ ହାଡ଼ଗଣ୍ଠି ସବୁ ଟୁକୁରା ଟୁକୁରା ହେଇ ଯାଇଛି...ତେଣୁ ଗୋଟେ ମୁଲାୟମ ବିଲେଇ ଭଳି ହେଇଯାଇଛି...ଆଉ ଯିଏ ମତେ ଚିହ୍ନେ ତା'ରି ସାମ୍ନାରେ ଆତ୍ମପ୍ରକାଶ କରିପାରେ । ଆଚ୍ଛା କାତେରୀନା ! ତୁମେ ଏଇନେ କିଭଳି ଅଛ ? ଶାସ୍ତ୍ରବିଧିତକ ଭକ୍ତି ସହକାରେ ପାଳନ କରୁଛ ତ ? ମୁଁ କବରରୁ ଏଠାକୁ ଚାଲି ଆସିଚି...ଏଠି ଦେଖୁଛି ସେରଗେଇ ସହିତ ନିଜ ସ୍ୱାମୀ ବିଛଣାରେ କି ରକମ୍ ଉଷୁମ କରୁଛ !

କାତେଝ୍ୱନା ସତକୁସତ ଅନେଇ ରହିଥିଲା—ଆଉ ତା ସହିତ ଚିତ୍କାର କରି ଉଠିଲା । ପୋଷା ବିଲେଇଟା ପୁଣି ସେରଗେଇ ଓ ତା ମଝିରେ ଶୋଇ ପଡ଼ିଲାଣି । ଆଉ ତା ମୁଣ୍ଡଟା ବରିସ ତିମୋତେଇଚ ମୁହଁ ଭଳି ଦିଶୁଥିଲା ।

ସେରଗେଇ ଉଠି ପଡ଼ିଲା, କାତେଝ୍ୱନାକୁ ଶାନ୍ତ କରେଇ ପୁଣି ଶୋଇ ପଡ଼ିଲା । କାତେଝ୍ୱନା କିନ୍ତୁ ଆଉ ଶୋଇ ପାରିଲାନି ।

ବିସ୍ଫାରିତ ଆଖିରେ ଶୋଇ ରହିଛି କାତେଝ୍ୱନା । ହଠାତ୍ ତା କାନ ଭିତରେ ଶୁଭିଲା ଜଣେ କିଏ ଗେଟ୍ ଖୋଲି ଅଗଣା ଉପରକୁ ଆସିବାର । ସେ ଲୋକ ଯିଏ ବି ହେଉ କୁକୁର ଗୁଡ଼ାକ ତାକୁ ଗୋଡ଼ୋଉଛନ୍ତି ଓ କିଛି ସମୟ ଭିତରେ ପୁଣି ଚୁପ୍ ପଡ଼ିଗଲେ—ହୁଏତ ନବାଗତର ଦେହକୁ ଚାଟିବାକୁ ଆରମ୍ଭ କରିଦେଲେଣି । ତା ପରେ ଆଉ ଗୋଟେ ମିନିଟ୍ ଗଲା । କ୍ଲିକ୍ କରି ତଳ ଲୁହା ଖିଲଟା ଖୋଲିଗଲା ଏବଂ ଦରଜା ଖୋଲିବାର ଶବ୍ଦ ଶୁଣାଗଲା ।

ହୁଏତ କଳ୍ପନାରେ ଏ ଶବ୍ଦ ଗୁଡ଼ାକୁ ଶୁଣୁଛି, ଅଥବା ମୋ ଜିନୋଭିଇ ବରିସିଚ୍ ଫେରି ଆସିଛି ଏବଂ ଦରଜା ଖୋଲୁଛି ଫାଲ୍ତୁ ଚାବିରେ । ଚଟ୍‌କରି ଚିନ୍ତାଟା କାତେଝ୍ୱନାର ମୁଣ୍ଡରେ ଖେଳିଗଲା ଏବଂ ସଙ୍ଗେ ସଙ୍ଗେ ସେରଗେଇକୁ କହୁଣୀ ମାରି ଉଠେଇଲା ।

ଏ କାନପାରି ଶୁଣ—। ସତରେ କେହି ଧୀର ପଦକ୍ଷେପରେ, ସାବଧାନରେ ସିଡ଼ିବାଟେ ଉପର ଘର ଆଡ଼କୁ ଆସୁଛି ।

କେବଳ ଶେମିଜ ପିନ୍ଧା ଅବସ୍ଥାରେ ଗୋଟେ କୁଦା ମାରି କାତେଝ୍ୱନା ଖଟରୁ ଓହ୍ଲେଇ ବାଲକୋନି ଝରକା ଖୋଲିଦେଲା । ସଙ୍ଗେ ସଙ୍ଗେ ସେରଗେଇ ଖାଲି ପାଦରେ କୁଦାମାରି ଝରକା ପାଖ ଖୁଣ୍ଟକୁ କୁଣ୍ଢେଇ ଧରିଲା—ଏଇ ଖୁଣ୍ଟବାଟେ ଅନେକ ଥର ତାର ପ୍ରଭୁପତ୍ନୀର ଶୋଇବା ଘରଠାରୁ ତଳକୁ ଓହ୍ଲେଇବାକୁ ହେଇଛି ।

କାତେଝ୍ୱନା ତା କାନରେ ଫିସ୍ ଫିସ୍ କରି କହିଲା—ନା···ନା ! ଦରକାର ନାହିଁ—ଦରକାର ନାହିଁ । ତୁମେ ଏଇଠି ଶୋଇ ରୁହ···ଏଇଠୁ କୁଆଡ଼େ ଯାଅନି । ତାପରେ ସେରଗେଇର ଜୋତା, କୋର୍ଟ ପ୍ୟାଣ୍ଟ ତାକୁ ଧରେଇ ଦେଇ ପୁଣି ଖଟ ଉପରେ କମ୍ବଳ ଘୋଡ଼େଇ ଆରାମରେ ଲୁଚି ରହିଲା ।

ଏହା ଭିତରେ କାତେଝ୍ୱନା ଶୁଣି ପାରିଛି, ତା ସ୍ୱାମୀ କିଭଳି ଦରଜା ପାଖକୁ ଆସିଲା ଏବଂ ଦମ୍ ବନ୍ଦକରି ଛିଡ଼ାହେଇ କାନପାତି ରହିଲା । ଏମିତି କି ସେ

ତା ହିଂସାଭରା ଛାତିର ଦ୍ରୁତ ସ୍ପନ୍ଦନ ପର୍ଯ୍ୟନ୍ତ ଶୁଣି ପାରିଲା । କିନ୍ତୁ କାତେରିନାର ହୃଦୟରେ ଟିକିଏ ବି କରୁଣା ଉଦୟ ହେଲନାହିଁ । ବରଂ ତାକୁ ଘେରିଗଲା ଗୋଟେ ପିଶାଚୀ ଅଟ୍ଟହାସ୍ୟ ।

ମନେ ମନେ ସେ ତା ସ୍ୱାମୀକୁ ଉଦ୍ଦେଶ୍ୟ କରି କହିଲା—ଯାଅ, ଗତ-କାଲିକୁ ଖୋଜ—ମୃଦୁ ହସି ଯେତେଦୂର ସମ୍ଭବ ତାଳରଖି ନିଷ୍ପାପ ଶିଶୁଭଳି ନିଶ୍ୱାସ ବନ୍ଦକଲା ।

ପ୍ରାୟ ଦଶ ମିନିଟ୍ ଧରି ଏଇ ଲୀଳା ଚାଲିଲା । ଅବଶେଷରେ ଦରଜା ପାଖରେ ଛିଡ଼ାହେଇ ସ୍ତ୍ରୀର ଶୋଇବା ଘୁଙ୍ଗୁଡ଼ିକୁ ଅପେକ୍ଷା କରିବାଟା ଜିନୋଭିଇଚ୍ ପାଖରେ କ୍ଳାନ୍ତିକର ମନେହେଲା । ସେ ଦରଜାରେ ଟିଙ୍କା ମାରିଲା ।

କିଏ ? କାତେରିନା ଜବାବ ଦେଲା କିନ୍ତୁ ଏକଦମ୍ ସଙ୍ଗେ ସଙ୍ଗେ ନୁହଁ ଗଳାଟା ଯେମିତି ନିଦୁଆ ମିଶା ।

ଜିନୋଭିଇ ଉତ୍ତର ଦେଲା—ତୁମର ଜଣେ କେହି ।

ତୁମେ !

ହଁ, ମୁଁ । ଯେମିତି ମୋ ଗଳା ଆବାଜ୍ ଶୁଣି ପାରୁନ ।

କାତେରିନା ସେଇ ଶେମିଜ୍ ପିନ୍ଧି ଶୋଇଥିଲା, ସେଇ ଭବରେ କୁଦି ପଡ଼ି ଦରଜା ଖୋଲିଦେଲା, ତାପରେ ଫେରେ କୁଦିପଡ଼ି ଗରମ ବିଛଣାରେ ଶୋଇ ପଡ଼ିଲା । କମ୍ବଳ ଭିତରୁ କହିଲା—ଠିକ୍ ଭୋରର ଆଗରୁ କେମିତି ଯେ ଶୀତଟା ଜମେଇ ଆସେ ।

ଜିନୋଭିଇ ବରିସିଚ୍ ଘରେ ପଶି ଚୁରିଆଡ଼କୁ ଅନେଇଲା । ତାପରେ ଖ୍ରୀଷ୍ଟ ମୂର୍ତ୍ତି ସାମ୍ନାରେ ଛିଡ଼ାଇ ହେଇ ପ୍ରାର୍ଥନା କଲା, ମହମବତୀ ଜଳେଇ ପୁଣି ଚରିଆଡ଼କୁ ଅନେଇଲା । ସ୍ତ୍ରୀକୁ ପଚାରିଲା—କି ରକମ ଅଛ—ସବୁ ଠିକ୍ଠାକ୍ ଚାଲିଛି ତ ?

କାତେରିନା ଉତ୍ତର ଦେଲା, ନାଲିଶ କଲାଭଳି ସେମିତି କିଛି ନୁହଁ ! ତା'ପରେ ଉଠି ବସି ଗୋଟେ ଢିଲା ସୂତା ବ୍ଲାଉଜ୍ ପିନ୍ଧିନେଲା ।

ପଚାରିଲା—ତୁମ ପାଇଁ ଗୋଟେ ନିଆଁଲଗା ଆଣ୍ଟ ଦେବି କି ? ଶୀତ ଲାଗୁଥିବ । ତୁମର କିଛି କରିବା ଦରକାର ନାହିଁ । ଆକ୍ସାନିୟାକୁ ଡାକ ସେ ତିଆରି

କରୁ । କାତେରୀନା ଚଟି ପିନ୍ଧି ବାହାରିଗଲା ଏବଂ ଫେରିଲା ଅଧଘଣ୍ଟାଏ ପରେ । ଏହା ଭିତରେ ସେ ଷ୍ଟୋଟ ଆଞ୍ଚରେ କାଠ କୋଇଲାରେ ନିଆଁ ଧରେଇ ନେଇ ଆସିଲା ଏବଂ ଅତିଶୟ ସନ୍ତର୍ପଣରେ ବିଦ୍ୟୁତ୍ ବେଗରେ ଥରେ ଛୁଟିଯାଇ ଷ୍ଟୋଟ ବାଲକୋନି ତଳକୁ ଗ୍ରଲିଗଲା ସେରଗେଇ ପାଖକୁ ।

ଏଇଠି ଥାଅ—ଫିସ୍ ଫିସ୍ କରି କାତେରୀନା କହିଲା । ସେରଗେଇ ଉତ୍ତର ଦେଲା—ତୁଚ୍ଛାକୁ ବସି ରହି ଲାଭ କଣ ?

ଓଃ ! ତୁମ ମୁଣ୍ଡରେ ରତିଏ ହେଲେ ବୁଦ୍ଧି ନାହିଁ । ଯେତେ ସମୟ ମୁଁ ଅନ୍ୟ ବ୍ୟବସ୍ଥା କରିନାହିଁ ସେତେବେଳ ସୁଦ୍ଧା ଏଇଠି ଥାଅ । ଏହା କହିସାରି ଫେରି ଆସିଲା । ସେରଗେଇ ବାହାରୁ ଥାଇ ଘର ଭିତରେ ଯାହାକିଛି ହେଉଛି ସବୁ ଶୁଣି ପାରୁଥିଲା ।

ଜିନୋଭିଇ ସ୍ତ୍ରୀକୁ ପଗ୍ରରିଲା—ଏତେଦିନ ଧରି କଉଠି ଅଳସୁଆ ଭବେ ସମୟ କଟାଇଲ ?

ଶାନ୍ତଭବେ ଉତ୍ତର ଦେଲା—ମୁଁ ସାମୋଭର ତିଆରି କରୁଥିଲି ।

କିଛି ସମୟ ଧରି ଆଉ କିଛି କଥାବାର୍ତ୍ତା ହେଲାନାହିଁ । ବାହାରୁ ଥାଇ ସେରଗେଇ ପରିଷ୍କାର ଶୁଣି ପାରୁଥିଲା, ଜିନୋଭିଇ ତାର ଲମ୍ବା କୋଟ୍‌ଟାକୁ ହାଙ୍ଗରରେ ଝୁଲେଇ ରଖିଲା । ତାପରେ ସେ ଗ୍ରରିଆଡ଼କୁ ପାଣି ଛିଟି ଜୋରରେ ନାକ ସଫା କରି ହାତମୁହଁ ଧୋଇଲା । ଏଥର ଗୋଟେ ତଉଲିଆ ମାଗିଲା ।

ସ୍ୱାମୀ ପଗ୍ରରିଲା—ଆଛା କୁହତ ଦେଖି, ମୋ ବାପାକୁ ଠିକ୍‌ଭବେ କବର ଦେଇଛ ? ଠିକ୍ ଯେଭଳି ହେବା କଥା ସେଭଳି ହେଇଛି । ଉତ୍ତର ଦେଲା ତା ସ୍ତ୍ରୀ । ସେ ମରିଯିବାରୁ ସମସ୍ତେ ମିଳିମିଶି ତାଙ୍କୁ କବର ଦେଲୁ ।

କିନ୍ତୁ ସମସ୍ତଙ୍କ ପାଖରେ ଏଟା ଅତ୍ୟନ୍ତ ଅପ୍ରତ୍ୟାଶିତ ମନେ ହେଉଛି— !

ଭଗବାନ ଜାଣନ୍ତି କେବଳ । କାତେରୀନା ଉତ୍ତର ଦେଇ ଗ୍ର'ପିଆଲାକୁ ଟୁଂଟାଂ କଲା ।

ଜିନୋଭିଇ ବିଷଣ୍ଣ ମୁହଁରେ ଘରର ଭିତରେ ଚଲାବୁଲା କଲେ । ତା'ପରେ ସ୍ତ୍ରୀକୁ ପୁଣି ପଗ୍ରରିଲା—ଆଉ ତୁମେ ସମୟକୁ କଟେଇଲ କିଭଳି ? ଏଠି ମୋର ଆମୋଦ-ପ୍ରମୋଦ କଣ, ସେ କଥା ସମସ୍ତେ ଜାଣନ୍ତି—ମୁଁ କଣ କରିବି, ମୁଁ ବଲ୍ ନାଚକୁ ଯାଇନି, ଥିଏଟର ବି ଦେଖିନି ।

ମୋର ମନେହୁଏ, ତୁମର ସ୍ୱାମୀଙ୍କୁ ଦେଖି ତୁମେ ବିଶେଷ କୌଣସି ଖୁସି ହେଇ ପାରୁନ... । ଆଉ ଆଖିରେ ଜିନୋଭିଇ ଅନାଇ ରହିଲା । ଏଇଥର ଅବତରଣିକାର ପାଦ ଧରିଛି ।

ତୁମ ଆମ ଭିତରେ ଦି'ଦିନ ତଳେ ବା'ଘର ହେଇନି ଯେ ଦେଖା ହେଲା ମାତ୍ରେ ପ୍ରେମ ପାଗିଳୀ ହେଇଯିବି । ଘରର କାମଦାମ—ବେପାର...ଘରବାଡ଼ି ସବୁ କଥା ବୁଝୁ ବୁଝୁ ମୋ ଗୋଡ଼ ଦୁଇଟା ଖଣ୍ଡିଆ ହେଇଗଲାଣି...ଆଉ ସେଇଟା ତୁମରି ଭଲ ପାଇଁ...କେମିତି ଯେ ଆଶା କରୁଛ ଯେ ତୁମକୁ ଦେଖିଲା ମାତ୍ରେ ମୁଁ ଆନନ୍ଦରେ ଫାଟି ପଡ଼ିବି ?

କାତେରିନା ନିଆଁ ଆଞ୍ଚଟାକୁ ଆଣିବା ପାଇଁ ପଦାକୁ ଗଲା ଆଉ ନଜର ମାରିନେଲା ସେରଗେଇ ଆଡ଼େ । ଜାମାରେ ଟାଣିଦେଇ କହିଲା—ହାଇ ମାରିବା ବନ୍ଦ୍ କର । ଆଖି ଦୁଇଟା ଖୋଲା ରଖିଥା ।

ଶ୍ରାଦ୍ଧର ପାଣି କଉଆଡ଼େ କେତେ ପରିମାଣରେ ଯିବ ସେ ସମ୍ବନ୍ଧରେ ସେରଗେଇର ସ୍ପଷ୍ଟ ଧାରଣା କରିପାରୁ ନଥିଲା, ତଥାପି ସଜାଗ ରହିଲା ।

କାତେରିନା ଫେରି ଆସିଲା । ଦେଖିଲା, ଜିନୋଭିଇ ଖଟ ଉପରେ ଆଣ୍ଠେଇ ପଡ଼ି ମୁଣ୍ଡ ଉପର ତକ୍ତା ଖିଲ ପାଖରେ ଘଡ଼ିଟାକୁ ଟାଙ୍ଗୁଛନ୍ତି । ହଠାତ୍ ସେ ପଚାରିଲା, ଟିକିଏ ବଙ୍କାବଙ୍କା ଭବରେ—ଆଚ୍ଛା, ତୁମେ ତ ଏକବାରେ ଏକାଥିଲ ତେବେ ଏଟା କିଭଳି ହେଲା ଯେ, ତୁମେ ଜୋଡ଼ା ବିଛଣା ସଜେଇଛ ?

ତା' ଆଡ଼କୁ ଶାନ୍ତ ଭବରେ ଅନେଇ ଉତ୍ତର ଦେଲା—ଲାଇଁକି ? ମୁଁ ତ ସବୁବେଳେ ତୁମ ପାଇଁ ଅପେକ୍ଷା କରୁଥିଲି ।

କୃତଜ୍ଞତା ଜଣାଉଛି, ଏଥିପାଇଁ । ଆଚ୍ଛା, ଏଇଆଡ଼େ ଦେଖ—ଏହା କହିସାରି ବିଛଣା ଚାଦର ଭିତରୁ ଗୋଟେ ଉଲ୍ ବୁଣା କମରପେଟି ବାହାର କରି ଦେଖାଇଲା...ଅସଲରେ ସେଟା ସେରଗେଇର ।

କାତେରିନା ସାମାନ୍ୟତମ ଦ୍ୱିଧା ନକରି କହିଲା—ମୁଁ ସେଟା ବଗିଚାରୁ ପାଇଥିଲି, ତାକୁ ମୋ ସ୍କାର୍ଟ ବାନ୍ଧିବା କାମରେ ଲଗେଉଛି ।

ସତେ ! ଗୋଟେ ବଦଖଦ ଗଳାରେ ଜିନୋଭିଇ କହିଲେ—ତୁମର ଏଇତ ସ୍କାର୍ଟ, ସେ ସମ୍ବନ୍ଧରେ ମୁଁ ଆଉ ଦୁଇ ଚାରିଟା କଥା ଜାଣି ପାରିଛି ଠିକ୍, କଣ ଶୁଣିଛ ?

ଓ ! ତୁମର ସବୁ ପୁଣ୍ୟ କର୍ମ !

ସେମିତି କିଛି ହେଇନି !

ଆଛା···ଆଛା ! ପରେ ସେସବୁ କଥାହେବା···ପରେ ଦେଖିବା···ଏହାକହି ଖାଲି ପିଆଲଟାକୁ ତା ସ୍ତ୍ରୀ ଆଡ଼କୁ ଘୁଞ୍ଚିଦେଲ ।

କାତେରିନା ଏକଥା ଉପରେ କିଛି ଉତ୍ତର ଦେଲ ନାହିଁ ।

ଅନେକ ସମୟ ଚୁପ୍ ରହିଲ ପରେ ଜିନୋଭିଇ ଭୁରୁଟେକି ସ୍ତ୍ରୀ ଆଡ଼କୁ ଅନାଇ କହିଲେ, ତୁମର ସମସ୍ତ କୀର୍ତ୍ତିକଳାପକୁ ମୁଁ ପ୍ରଶସ୍ତ ଦିବାଲୋକରୁ ଟାଣି ବାହାର କରିବି, ବୁଝିଲ ?

କାତେରିନା ଉତ୍ତର ଦେଲ—ଡରରେ ଯେଉଁମାନେ ମୂଷା ଗାତ ଖୋଜନ୍ତି ମୁଁ ସେ ଦଳର ନୁହଁ ।

କଣ କହିଲ ? କଣ କହିଲ ? ଜିନୋଭିଇ ଚଡ଼ା ଗଳାରେ ପଚାରିଲେ ।

ଯାଅ ଯାଅ—ସେସବୁ···ମୁଁ ମୋ ଫେରିବାଲ ପସରା ମେଲେଇ ନାହିଁ ! ସତରେ ! ସାବଧାନ ! ଟିକିଏ ସାବଧାନ ହୁଅ···ଖୁବ୍ ବେଶି ବକର୍ ବକର୍ ଶିଖି ଯାଇଛ ଯା ଭିତରେ— ।

କାତେରିନା ଏଥର ଜୋର୍‌ରେ କହିଲ—ବକର୍ ବକର୍ କଲେ ଯଦି ମୋ ପ୍ରାଣକୁ ଭଲ ଲଗେ, ତା ବିରୁଦ୍ଧରେ କୌଣସି ମହା ମୂଲ୍ୟବାନ କାରଣ ଅଛି କି ?

ଦେଖ, ଏଣିକି ନିଜ ଉପରେ ନଜର ରଖ ।

ମୋ ନିଜ ଉପରେ ନଜର ରଖିଲ ଭଳି କିଛି ନାହିଁ । କିଏ ଲମ୍ବା ଜିଭ ହଲେଇ ତୁମକୁ ଯା-ତା କହିଦେଲ, ସେଥିପାଇଁ ବସେଇ ବସେଇ ହରେକ ରକମ ଗାଳିଗୁଲା ଶୁଣିବାକୁ ହେବ ନା କଣ ? ଏଟାତ ନୂଆ ତାମଶା ଦେଖୁଛି ?

ଲମ୍ବା ଜିଭ ହଉ ବା ନ ହେଉ, ତୁମ ଢଳାଢଳି କଥା ଏଠିକାର ବିସ୍ତର ଲୋକ ଜାଣିଛନ୍ତି ।

ସତକୁ ସତ ଏଥର ରାଗିଯାଇ ପାଟିକଲ—କି ଢଳାଢଳି ?

ମୁଁ ଜାଣିଛି କେଉଁଟା ?

ସେଇୟା ନା' କଣ ? ଯଦି ଜାଣିଛ, ଖୋଲାଖୋଲି କହି ଦେଉନା—। ଜିନୋଭିଇ କୌଣସି ଉତ୍ତର ନ ଦେଇ ଖାଲି ପିଆଲାଟାକୁ ସ୍ତ୍ରୀ ଆଡ଼କୁ ପକେଇ ଦେଲ ।

ସ୍ୱାମୀକୁ ଖେଙ୍କୁଲ ଭଳି ଗୋଟେ ଗ୍ଲାସଚକୁ ତା ସ୍ୱାମୀ ଆଡ଼କୁ ଖଟାଂକରି ଫୋପାଡ଼ି ଦେଇ ଘୃଣାରେ କହିଲ—ଅସଇ କଥା କହିବାର କିଛି ନାହିଁ । ଯଦି କହିବାର ଅଛି, କହିଦିଅ, କାହାଠୁ କଣ ଶୁଣିଛ କିଏ ସେଇ ପ୍ରେମିକ ଯାହାକୁ ତୁମଠାରୁ ତାକୁ ବେଶି ପସନ୍ଦ କରୁଛି ?

ଜାଣିବ, ସବୁ ଜାଣିବ—ଏତେ ବ୍ୟସ୍ତ କାହିଁକି ?

କହୁନ, କୁକୁର ଭଳି ଘେଉ ଘେଉ ହେଇ ସେରଗେଇ ନାଁରେ କହିଛି, ସେଇୟା ନା ଆଉ କିଛି ?

ମୁଁ ସବୁ ବାହାର କରିବି...ବାଃ, ଦେଖୁଛି, ତୁମ ଉପରେ ମୋର ଯେଉଁ ଅଧିକାର ଥିଲ ତାକୁ କେହି କାଢ଼ି ନେଇଚି...ତୁମେ ନିଜ କଥା ସବୁ ନିଜେ କହିବ—ସବୁ କହିବ—।

ଦାନ୍ତ କିଡ଼ିମିଡ଼ି କରି ଚିହାର କରି ଉଠିଲ—ହୁଁଃ...ମୋତେ ଖୁବ୍ ଅସହ୍ୟ ଲଗୁଛି...ଏହା କହି ପଦାକୁ ପଳାଇଲ । କେତେ ସମୟ ପରେ ସେରଗେଇକୁ ସାଙ୍ଗରେ ଧରି ପହଞ୍ଚି କହିଲ—ଏଇ ତ, ଏଇଠି ସେ । ତାକୁ—ମୋତେ କଣ ପଚାରିବାର ପଚାର—ଯଦି ଏତେ କଥା ତୁମକୁ ଜଣାଅଛି ।

ଅସଲରେ ଜିନୋଭିଇର ମୁଣ୍ଡ ଗୋଳମାଳିଆ ହୋଇଗଲଣି । ସେ ପ୍ରଥମେ ସେରଗେଇ ଆଡ଼କୁ ଅନାଇଲେ । ତାପରେ ତା ସ୍ତ୍ରୀ ଆଡ଼କୁ ଅନାଇ, ଭାବିଗଲ କେଉଁଠୁ ଆରମ୍ଭ ପୁଣି କେଉଁଠି କଥାଟା ସରିବ, ଅନୁମାନ କରିପାରିଲେନି ।

ଏଇଠି ତୁ କଣ କରୁଚୁ ?

ବେହିୟା ଭଳି କାତେରୀନା ଉତ୍ତର ଦେଲ—ତୁମେ ଯା ସବୁ ଖୁବ୍ ଭଲ କି ଜାଣିଛ ସେଗୁଡ଼ାକ ପଚାରୁନ ? ତୁମେ ଭାବିନ୍ତ ମୋତେ ମାରିବା ଭୟ ଦେଖାଇବ... ସେଟା ଜମ୍ମା ହେଇ ପାରିବନି...ତୁମ ପ୍ରତିକ୍ରିୟା ଜାଣିବା ପୂର୍ବରୁ ମୁଁ ସ୍ଥିର କରି ସାରିଛି...।

ଜିନୋଭିଇ ସେରଗେଇ ଆଡ଼କୁ ପାଟିକଲ—କଣ କରୁଛୁ, ଯା' ଏଠୁ ।

କାତେରୀନା ତାକୁ କହିଲ—ବେଶ୍...ଆଉ କିଛି ?

ଝଟ୍‌ପଟ୍ କବାଟ ଭଲକି ବନ୍ଦକରି ଚାବିଟା ପାଖରେ ରଖିଲା । ତାପରେ ଢ଼ିଲା ବ୍ଲାଉଜ ସର୍ବସ୍ୱ ବିଛଣାରେ ଗଡ଼ି ପଡ଼ିଲା । ସେରଗେଇକୁ ଡାକି କହିଲା—ଏଇଠି ଆସି ବସ… ।

ସେରଗେଇ ମଥା ଝାଙ୍କି ନେଇ ସାହସୀ ଭଳି ମାଲିକାଣୀ ପାଖରେ ଯାଇ ବସି ପଡ଼ିଲା ।

ହେ ଭଗବାନ ! ହେ ପ୍ରଭୁ ! ଏସବୁ କଣ ହଉଛି ? ଆରେ କଣ କରୁଛୁ କାଫେର—ଜିନୋଭିଇର ମୁହଁ ବାଇଗଣୀ ରଙ୍ଗ ଭଳି ଦିଶିଲା ତାପରେ ଆରାମ-ଚେୟାରରୁ ଉଠି ଛିଡ଼ାହେଲେ ।

ସତରେ ? ତୁମର ପସନ୍ଦ ହେଉଚି ? ଥରେ ଅନେଇ ଦେଖିନିଅ…ଭଲକି ଦେଖି ନିଅ…ବାଜପକ୍ଷୀ ଭଳି ତା ସୁନ୍ଦର ଆଖି ଦୁଇଟିକୁ । କାତେରିନା କହିସାରି ଖୁବ୍ ଜୋର୍‌ରେ ହସି ଉଠିଲା ଏବଂ ସ୍ୱାମୀ ସାମ୍ନାରେ ସେରଗେଇକୁ ଟାଣିଧରି ଚୁମ୍ବନ ଦେଲା ।

ସଙ୍ଗେ ସଙ୍ଗେ ଠାସ୍ କରି ଗାଲରେ ଗୋଟେ ଚାପୁଡ଼ା ମାରି ଜିନୋଭିଇ କୁଦାମାରିଲା ଭଳି ବାଲକୋନି ଝରକା ବାଟେ ବାହାରକୁ ପଳାଇଲେ ।

ଆହା ! ତା'ହେଲେ ଏଇ ବ୍ୟବସ୍ଥା ହେଲା ! ବେଶ୍ ବନ୍ଧୁ ! ତୁମକୁ ଅନେକ ଧନ୍ୟବାଦ ! କେବଳ ଏତକ ପାଇଁ ମୁଁ ଅପେକ୍ଷା କରିଥିଲି—ବଡ଼ପାଟିରେ କହିଲା କାତେରିନା । ବେଶ୍—ବେଶ୍ ତାହେଲେ ଦେଖାଯାଉଚି ମୋ ମର୍ଜିରେ ସବୁ କିଛି ହେବ, ତୁମ ମର୍ଜି ଆଉ ଚଳିବନି ।

ଗୋଟେ ଧକ୍‌କା ସେରଗେଇକୁ ଦେଇ ବିଦ୍ୟୁତ୍‌ବେଗରେ ସ୍ୱାମୀ ପିଛା କରି ବାଲକୋନି ଝରକା ବାଟେ ପଳେଇବା ପୂର୍ବରୁ ମାଡ଼ିବସିଲା କାତେରିନା । କାତେରିନା ତା ଗଳାକୁ ଚିପି ଘୁଟିଦେଲା ବେଳେ ଜିନୋଭିଇ ତଳେ କଚାଡ଼ି ପଡ଼ିଲାରୁ ମୁଣ୍ଡଟା ପିଟି ହେଇଗଲା ଜୋର୍‌ରେ ।

ମାଟି ଉପରେ ସଜୋରେ ପଡ଼ିଲାକ୍ଷଣି ଜିନୋଭିଇ ବୁଝିନେଲେ ତାଙ୍କର ଆଉ କିଛି କରିବାର ନାହିଁ । ଆର୍ତ୍ତନାଦ କଲେବି, କାହା କାନରେ ପଡ଼ିବ

ନାହିଁ । ନୀରବ ରହି ସ୍ତ୍ରୀ ଆଡ଼କୁ ଅନାଇ ରହିଲେ । ସେ ଦୃଷ୍ଟିରେ ଥିଲା ଜିଜ୍ଞାସା, ଅଭିସମ୍ପାତ ଆଉ ତୀବ୍ର ଯନ୍ତ୍ରଣା ।

କାତେରୀନା କିନ୍ତୁ ନିଜର ସମସ୍ତ ବଳଖଟେଇ ମାଡ଼ିବସିଲା ଜିନୋଭିଇକୁ । ଜିନୋଭିଇ ଆତ୍ମରକ୍ଷା କରିବାକୁ ଆଦୌ ଚେଷ୍ଟା କଲା ନାହିଁ ।

କାତେରୀନା ସେରଗେଇକୁ କହିଲା—ଜୋରରେ ଧର ଯାକୁ । ସେରଗେଇ ନଇଁ ପଡ଼ିଲା ବେଳେ ତା କାନରେ ଫିସ୍‌ଫିସ୍ କହିଲା ପରେ ସେ ତା ମୁନିବ ଉପରେ ବସି ତାର ଦୁଇଆଣ୍ଠୁ ଦେଇ ଦୁଇ ହାତକୁ ଚିପିଧରିଲା । ଜିନୋଭିଇ ପ୍ରତି ଆକ୍ରମଣ କରିବାକୁ ଗୋଟେ ଧକ୍‌କା ଦେବା ଫଳରେ ସେରଗେଇ ପଛକୁ ଘୁଞ୍ଚିଗଲା । କିନ୍ତୁ ତା ପର ମୁହୂର୍ତ୍ତରେ ହିଂସ୍ର ପଶୁ ଭଳି ସେରଗେଇ ଓ କାତେରୀନା ମହମବତୀ-ଦାନୀର ଓଜନୀଆ ପଟେ ଗୋଟେ ଶକ୍ତ ପାହାର ମାରିଦେଲାରୁ ରକ୍ତ ଜୁଡ୍‌ବୁଡ୍ ହେଇ ନିଥର ହେଇଗଲା ଜିନୋଭିଇ ।

କାତେରୀନା ସ୍ୱାମୀ ଛାତି ଉପରେ କାନ କିଛି ସମୟ ରଖିଲା ବେଳେ ଏତିକି ଶୁଣିଲା—ମୋର ଅନ୍ତିମ ଇଚ୍ଛା...ତୁମେ ଯେଉଁକମ ଅଛ ସେଇଭଳି ବେଶ୍ ରୁହ...ଚ-ଳି-ବ । ପାଞ୍ଚମିନିଟ୍ ଖଣ୍ଡ ପରେ କାତେରୀନା ଛିଡ଼ା ହେଇପଡ଼ି କହିଲା—ବାସ୍...ତାର ଯାହା ପ୍ରାପ୍ୟ, ସେ ତା ପାଇ ସାରିଛି ।

ସେରଗେଇ ଉଠି ଛିଡ଼ା ହେଲା । ଜିନୋଭିଇ ଖତମ୍ ହେଇଗଲା...ଚଟାଣ ଉପରେ କେତେ ବୁନ୍ଦା ରକ୍ତ ଜମାଟ ବାନ୍ଧି ସାରିଥିଲା ସେତେବେଳକୁ ।

ସେରଗେଇ ତାକୁ ମଦଭଣ୍ଡରେ ଟେକି ଟେକି ନେଇଗଲା ସେଇ ଗୋଦାମ ଘରକୁ ଯେଉଁଠି ମାତ୍ର କିଛିଦିନ ପୂର୍ବେ ବରିସ୍ ଟିମୋଟେଇଚ୍ ସେରଗେଇକୁ ତାଲାବନ୍ଦ କରି ରଖିଥିଲା । ତାପରେ କାତେରୀନାର ଘରକୁ ଫେରି ଆସିଲା ।

ଇତି ମଧ୍ୟରେ କାତେରୀନା ହାତର ଦସ୍ତାନା ଆଉ ସ୍କାର୍ଟ କାଢ଼ି ପକେଇ ସାବୁନରେ ସଫା କରି ସାରି ଗୋଟେ ଛିଣ୍ଡା କନାରେ ଘରଚଟାଣଟାକୁ ସଫା କରି ସାରିଥିଲା । ଯେଉଁଠି ରକ୍ତ ଦାଗ ଲଗିଥିଲା ତାକୁ ଅତି କଷ୍ଟରେ ସଫାକରିଦେଲା । ଆଞ୍ଚ ଉପରେ ବିଷମିଶା ଯେଉଁ ପାଣି ଫୁଟୁଥିଲା, ସେଥିରେ ଟି ବନେଇକି ଜିନୋଭିଇକୁ ପିଇବାକୁ ଦେଇଥିଲା । ଓ ସେ ଟି' ତା'ର ସ୍ୱାମୀକୁ କିଛି ସମୟ ପାଇଁ ଉତ୍ତେଜିତ କରି ଦେଇଥିଲା, ସେ ପାଣି ସେ ପର୍ଯ୍ୟନ୍ତ ଥଣ୍ଡା ହେଇଯାଇନି ।

ଆଞ୍ଚ ସହିତ କପ୍...ଛିଣ୍ଡାକନା ଉଠେଇ ଦରଜା ଆଡ଼କୁ ଯାଉ ଯାଉ କାତେରୀନା ସେରଗେଇକୁ କହିଲା—ଆସ, ଆଲୁଅ ମୋତେ ଦେଖାଅ । ଦରଜା

ପାଖରେ ସେରଗେଇ ହେଲକ୍ଷଣି କାତେଶ୍ୱାନା କହିଲା—ଆଲୁଅଟାକୁ ତଳେଇ ଧର । କାତେଶ୍ୱାନା ସେଇ ଆଲୁଅ ଜରିଆରେ ଘରର ଚଟାଣଠାରୁ ତଳମହଲ ଗୋଦାମ ଘର ପର୍ଯ୍ୟନ୍ତ ତନ୍ନତନ୍ନ କରି ନିରୀକ୍ଷା କରିନେଲା, କଉଠି ରକ୍ତ ଫକ୍ତ ଦାଗ ପଡ଼ିଛି କି ନାହିଁ । ଦୁଇଟି ଜାଗାରେ ରକ୍ତଦାଗ ଲଗିଥିଲା । ଭିଜା କପଡ଼ାରେ ସେଗୁଡ଼ାକୁ ଘଷି ଦାଗତକ ଲୋପ କରିଦେଲା ।

ଏଇଥର ଠିକ୍ ହେଇଛି......ଯେମିତି କର୍ମ ସେମିତି ଫଳ......ନିଜ ସ୍ତ୍ରୀ ପଛରେ ଏରକମ ଗୁପ୍ତଚର ଭଳି ଲଗିରହିଲେ...ଫଳ ଭୋଗିବନି ତ ଆଉ କଣ । କହୁ କହୁ ଗୋଦାମ ଘର ଆଡ଼େ ଅନାଇଲା ।

ସେରଗେଇ ବହୁ କଷ୍ଟରେ କହି ପକେଇଲା—ସବୁ କିଛି ଖତମ୍ ହେଇଗଲା ! ନିଜ ଗଳା ଆବାଜ ଶୁଣି ସେ ଶିହରି ଉଠିଲା ।

ଶୋଇବା ଘରକୁ ଫେରି ଆସିଲା ବେଳକୁ ସରୁ ଗୋଲାପୀ ଧାର ଭଳି ପୂର୍ବାକାଶ ଛିଣ୍ଡେଇ ପ୍ରଥମ ଉଷା ଉଦୟ ହେଉଥିଲା—ଫୁଲ ଢଙ୍କା ଆପେଲ ଗଛ ଉପରେ...ଦିଆଲର ଉଚା ବେଡ଼ା ଭିତର ଦେଇ କାତେଶ୍ୱାନାର ଶୋଇବା ଘର ଭିତରକୁ ସକାଳ ପଶି ଆସିଲା ।

ଘର ବାହାରେ ଦାଣ୍ଡବାଟେ ବୁଢ଼ା କିଗଣୀ କାନ୍ଧ ଉପରେ ମେଣ୍ଢା ଲୋମର କୋଟଟା ଚଢ଼େଇ ହାଇ ମାରି ମାରି, ଡାହାଣ ହାତର ତିନି ଆଙ୍ଗୁଳି ଦେଇ ଦେହରେ ଥିବା କ୍ରୁଶର ପ୍ରତୀକ ଆଙ୍କି ଆଙ୍କି ବୁଢ଼ା ଗ୍ଲିଛି ଗେଷେଇ ଘର ଆଡ଼େ ।

କାତେଶ୍ୱାନା ସାବଧାନ ସହ ଝର୍କାର ଫିତାଲଗା ଦରଜାଟାକୁ ବନ୍ଦକରି ସେରଗେଇକୁ ପୁଙ୍ଖାନୁପୁଙ୍ଖ ଦୃଷ୍ଟିରେ ଦେଖିବାକୁ ଲଗିଲା ଯେମିତି ସେ ତା ଗୁଡି ଭିତରେ ଥିବା ଆତ୍ମସତ୍ତାଟି ପର୍ଯ୍ୟନ୍ତ ଦେଖି ନେଇ ତାକୁ ଚିହ୍ନିବାକୁ ଚେଷ୍ଟାକଲା ।

ସେରଗେଇ କାନ୍ଧ ଉପରେ ହାତ ରଖି କହିଲା, କି ଗୋ ! ଏବେଠାରୁ ତୁମେ ତ ସୌଦାଗରଗୁ ଜଣେ ହୋଇଗଲ ।

ଉତ୍ତରରେ ସେରଗେଇ ଗୋଟିଏ ବି ଶବ୍ଦ କଲନାହିଁ । ତା ଓଠ ଦୁଇଟି ଥରୁଥିଲା । କଣ ଯେ କଷ୍ଟ ତା ଦେହସାରା କମ୍ପେଇ ଦେଉଥିଲା । ଆଉ କାତେଶ୍ୱାନାର କିଛି ହେଇନି, କେବଳ ତାର ଓଠ ଦୁଇଟିରେ କିଛି କିଛି ଶୀତ ବୋଧ ହେଉଥିଲା ।

ଲୁହାର ବାଡ଼ି ଆଉ ଓଜନିଆ ଶାବଳ ବ୍ୟବହାର କରିବା ଫଳରେ ଦିନେ ଦୁଇଦିନ ଭିତରେ ସେରଗେଇର ହାତରେ ମୋଟା ମୋଟା ଫୋଟକା ଦେଖାଦେଲା,

ସେଥିରେ ଯାଏ ଆସେ ନାହିଁ—ଜିନୋଭିଇ ବରିସିଚ୍‌କୁ ଏମିତି ପରିପାଟୀ ସହ ତଳମହଲ ଗୋଦାମ ଘରେ ପୋତି ଦିଆଗଲା ଯେ, ତାର ବିଧବା କିମ୍ବା ବିଧବାର ପ୍ରେମିକର ସାହାଯ୍ୟ ଛଡ଼ା ଶେଷ ବିଚାର ଦିନ ପର୍ଯ୍ୟନ୍ତ କେହି ତାକୁ ଖୋଜି ପାଇବେନି ।

ସେରଗେଇ ଲାଲ ରଙ୍ଗର ଗୋଟେ ସ୍କାର୍ଫ ଦେହରେ ପକେଇ କାରବାର କରେ । ଏହା ଭିତରେ ସେରଗେଇର ଗଳାରେ ବରିସ୍ ଇ ଯେଉଁ ଦାନ୍ତ ବସେଇ ଦେଇଥିଲା ସେ ଦାଗ ଶୁଖିବା ଆଗରୁ କାତେରିନା ସ୍ୱାମୀର ଅନୁପସ୍ଥିତି ଆଶଙ୍କାଭରା କଳ୍ପନାଜଳ୍ପନା ବିଷୟ ହୋଇ ଉଠିଥିଲା । ବରିସ ସମ୍ବନ୍ଧରେ ସମସ୍ତଙ୍କଠୁ ବେଶି କଥା କହେ ସେରଗେଇ ନିଜେ । ଓପରଓଳା ଦିନେ ଦିନେ କୌଣସି ଦିନ ପିଲାଙ୍କ ସହିତ ବେଞ୍ଚରେ ବସି କହି ପକାଏ । ସତରେ, କହିଲ ଭାଇ, ଆମ ମାଲିକ ଫେରିଲେନି କାହିଁକି ? ସେମାନେ ଅବାକ୍ ହୋଇ ଭାବନ୍ତି ବ୍ୟାପାରଟା କଣ ।

ଦିନେ ମିଲ୍‌ରୁ ଖବର ଆସିଲା, ଅନେକ ଦିନ ହେଲା ମାଲିକ ଘୋଡ଼ା ଗାଡ଼ି ଭଡ଼ା କରି ଘର ଆଡ଼କୁ ଆସିଥିଲେ । ଯେଉଁ କୋଚମ୍ୟାନ ଗାଡ଼ିଟା ଚଳାଉଥିଲା ସେ କହିଲା, ଜିନୋଭିଇକୁ କେମିତି ଯେପରି ଅପ୍ରକୃତିସ୍ଥ ବୋଲି ମନେ ହେଉଥିଲା ଏବଂ କେମିତି ଟିକେ ବେଖାପ ଭାବେ ତାକୁ ବିଦାୟ ଦେଇ ସହରର ମଠ ପାଖରେ ପହଞ୍ଚି ସେ ତା କପଡ଼ା ବ୍ୟାଗ୍‌ଟିକୁ ହାତକୁ ନେଇ ଗାଡ଼ିରୁ ଓହ୍ଲେଇ ଚାଲିଗଲା । ଏ କାହାଣୀ ଶୁଣି ସେମାନଙ୍କ ମନର ଧନ୍ଦା ଯେମିତି ବଢ଼ିଗଲା ।

ଜିନୋଭିଇ ବରିସିଚ୍ ଅନ୍ତର୍ଦ୍ଧାନ ହୋଇଯାନ୍ତି, ବାସ୍, ଏ ସମ୍ପର୍କରେ ଆଉ କାହାର କିଛି କହିବାର ନାହିଁ । ତାକୁ ଖୋଜି ବାହାର କରିବାର ପାଇଁ ଚେଷ୍ଟା ଓ ଅନୁସନ୍ଧାନ ଆରମ୍ଭ ହେଲା କିନ୍ତୁ କିଛି ଜଣା ପଡ଼ିଲାନି—ସେ ଯେମିତି ପବନରେ ମିଶି ହାଓଆ ହୋଇଗଲା ।

କୋଚମ୍ୟାନ ଗ୍ରେପ୍ତାର କରା ହୋଇଥିଲା, ତାଠୁ କେବଳ ଜଣାଗଲା ଯେ ଜିନୋଭିଇ ତାକୁ ମଠ ପାଖରେ ଛାଡ଼ି ଦେଇ ଏକା ଚାଲିଗଲା । ସମସ୍ତ ବ୍ୟାପାରଟା ମୋଟେ ପରିଷ୍କାର ହେଲା ନାହିଁ । ଏଣେ ବିଧବା କାତେରିନା ସେରଗେଇ ସହିତ

ଶାନ୍ତଭାବେ ଦେପରୁଆ ଜୀବନ ଯାପନ କରି ଲଗିଲ । ମଝିରେ ମଝିରେ ଗୁଜବ ଉଠେ, ଜିନୋଭିଇକୁ ବେଳେବେଳେ ଏଠାରେ ଦେଖା ମିଳିଛି···ସେଠାରେ ଦେଖା ହେଇଛି—କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ଆଉ ଘରକୁ ଫେରିଲନି । କାତେଲ୍ସ୍ନା ସମସ୍ତଙ୍କଠୁ ଭଲକରି ଜାଣିଛି, ଜିନୋଭିଇ ଆଉ କେବେ ବି ଫେରିବନି, ଫେରି ଆସି ପାରିବନି ।

ମାସେ ଗଲ, ଦି ମାସ ଗଲ, ତିନି ମାସ ଗଲ—କାତେଲ୍ସ୍ନା ପେଟ ଭରି ହେବାକୁ ଲଗିଲ ଧୀରେ ଧୀରେ ।

ଦିନେ କହିଲ—ଏଥର ଆମ ଧନ ଦୌଲତ ନିରପଦ ହେଲ । ମୁଁ ତୁମକୁ ଗୋଟେ ବଂଶଧର ଦେବି । ସଙ୍ଗେ ସଙ୍ଗେ ସହରର କର୍ମକର୍ତ୍ତାଙ୍କ ପାଖରେ ଦରଖାସ୍ତ କରି ଜଣାଇଲ—ତାର ଏବଂ ତାର ବିଷୟ ସମ୍ପତ୍ତି—ଅମୁକ ତମୁକ୍ ଏବଂ ସେ ବୁଝି ପାରିଛି, ସନ୍ଦେହ ନାଇଁ, ସେ ଅନ୍ତଃସତ୍ତ୍ୱା ।

ଇତିମଧ୍ୟରେ ଇସମାଇଲଫ୍ ପରିବାରର ବ୍ୟବସାୟ କାରବାର ଟିକିଏ ବି ଆଗେଇଲ ନାହିଁ । ତାକୁ ଯେମତି ସମସ୍ତ ଲେଣଦେଣ ଉପରେ କର୍ତ୍ତୃତ୍ୱ ଏବଂ ସ୍ଥାବର ସମ୍ପତ୍ତିର ସର୍ବତ୍ର ଅବାଧ ଅଧିକାର ଦିଆଯାଉ ।

ଏତେବଡ଼ ଗୋଟେ କାରବାର କଣ ଉଚ୍ଛନ୍ନ ହେଇଯିବ—ଯେତ କଳ୍ପନାତୀତ ! କାତେଲ୍ସ୍ନା ତା ସ୍ୱାମୀର ଆଇନସଙ୍ଗତ ସ୍ତ୍ରୀ, ମୋଟା ରକମର କିମ୍ବା ସନ୍ଦେହ ଜନକ ଦେଣା ନାହିଁ ସୁତରାଂ ସ୍ପଷ୍ଟ ବୁଝାଗଲ ଦରଖାସ୍ତ ମଞ୍ଜୁର ହେବ ।

ମଞ୍ଜୁର ହେଲ ବି !

ଅତଏବ କାତେଲ୍ସ୍ନା ଜୀବନ ଯାପନ କରିବାକୁ ଲଗିଲ—ମହାରାଣୀ ଭଳି । ସେରଗେଇକୁ ପୋଷାକୀ ସେଇଗେଇ ଫିଲିପିଚ୍ ନାମରେ ଡକାଡକି କଲେ ।

ହଠାତ୍ ବିନା ମେଘରେ ବଜ୍ରାଘାତ ଭଳି ଲିଭେନ ସହର ମେୟରଙ୍କଠୁ ଏଇ ମର୍ମରେ ଚିଠି ଆସିଲ ଯେ, ବରିସ୍ ତିମୋତେଇଚ୍ ଯେଉଁ ମୂଳଧନ ନେଇ ବେପାର କରୁଥିଲେ ସେଟା ତାର ସମ୍ପୂର୍ଣ୍ଣ ନିଜସ୍ୱ ନୁହଁ, ତାର ଅଧିକାଂଶ ଧନ ଆସିଥିଲ ତାର ଗୋଟେ ନାବାଳକ ଭଣଜା ପାଖରୁ—ତାର ନାଁ ଜାଖାରଫ୍ ଲିଆମିନ୍, ଏବଂ ଆଇନତଃ ଗୋଟେ ଫଇସଲ ନ କରି କାରବାରଟା ଏକା କାତେଲ୍ସ୍ନା ହାତରେ ଛାଡ଼ିଦେବା ଠିକ୍ ନୁହଁ ।

ନୋଟିସ୍ ଆସିଲା ପରଠୁ ମେୟର କାତେରୀନା ସହିତ ଆଲୋଚନା କଲେ ଏବଂ ତାପରେ ସପ୍ତାହ ଖଣ୍ଡ ଯାଇଛି କି ନାହିଁ ଲିଭେନ ଠାରୁ ଆସି ପହଞ୍ଚିଲେ ଜଣେ ବାର୍ଦ୍ଧକ୍ୟ ବୁଢ଼ୀ, ସାଙ୍ଗରେ ଗୋଟେ ଗ୍ରେଟ ପିଲା ।

ମହିଳାଜଣକ କହିଲେ, ମୁଁ ସ୍ୱର୍ଗତ ବରିସ ତିମୋତେଇଭିଚର ସମ୍ପର୍କରେ ଭଉଣୀ ହୁଏ ଆଉ ଏ ମୋର ପୁତୁରା ଫେଦୋର ଲିୟାମିନ୍ ।

କାତେରୀନା ତାଙ୍କୁ ଅଭ୍ୟର୍ଥନା ଜଣାଇଲା ।

ଅଗଣାରୁ ଛିଡ଼ାହୋଇ ସେରଗେଇ ତାଙ୍କ ଆଗମନ ଓ ନବାଗତଙ୍କ ପ୍ରତି ଅଭ୍ୟର୍ଥନା ଜ୍ଞାପନ ଦେଖି ତାର ମୁହଁ ସାଦା ପଡ଼ିଗଲା ।

କାତେରୀନା ତାକୁ ପଚାରିଲା—ତୁମର କଣ ହେଲାକି ?

କିଛି ନୁହଁ । ମୋର ମନେ ହେଲା ଏଇ ଲିଭେନ ଗୋଷ୍ଠୀ ଯୋଗୁ ବାଜି ହାରିବାକୁ ପଡ଼ିବ ।

ସେଦିନ ରାତିରେ ଆଞ୍ଚକୁ ଘେରି ବସିଥିଲା ବେଳେ ସେରଗେଇ ପଚାରିଲା— ତା'ହେଲେ ଆମେ ଏଥର କଣ କରିବା । ସବୁଟା ଭସ୍ମ ହେଲାଭଳି ଲାଗୁଛି ।

ଭସ୍ମ, କାହିଁକି ?

ନୁହଁତ ଆଉ କଣ ? ଏଇନେ ସବୁକିଛି ଭାଗବଣ୍ଟା ହେଇଯିବ । ଆମ ଭାଗରେ ଯାହା ପଡ଼ିବ ସେଥିରେ ଆମେ ଚଳିବା କିପରି ?

କାହିଁକି ? ତୁମର କଣ ଭୟ ହେଉଛି, ତୁମେ ଯଥେଷ୍ଟ ପାଇବନି ?

ମୁଁ ନିଜ ହିସାବ କଥା ଭାବୁନି । ସନ୍ଦେହ ହେଉଛି, ଆମେ ଆଉ ଖୁସୀ ହେଇ ପାରିବାନି ।

ଏ ଦୁର୍ଭାଗ୍ୟ ତୁମ ମନକୁ କାହିଁକି ଆସିଲା, ଶୁଣେ ? ଆମେ ଖୁସି ହେଇ ପାରିବୁନି କାହିଁକି ?

ସେରଗେଇ ଉତ୍ତର ଦେଲା, ତାର କାରଣ, ତୁମ ପ୍ରତି ମୋର ଯେଉଁ ପ୍ରେମ, ସେ ପ୍ରେମ ଚାହେଁ ତୁମକୁ ସମାଜର ଉଚ୍ଚ ସ୍ଥାନରେ ବସେଇ ଦେଖିବାକୁ... ଆଗେ ଯେଭଳି ନଗନ୍ୟ ଜୀବନ ଯାପନ କରୁଥିଲେ, ସେ ରକମ ନୁହେଁ । ମୋର ମନେ ହେଉଛି ଆମଦାନୀ କମି ଯିବାରୁ ଖରଚ ବାରଚରେ ଟଣାଟଣି ପଡ଼ିବ ।

ସେଥିରେ ଆମ ଜୀବନରେ ତ କୌଣସି ହେରଫେର ହେବନି— । ଠିକ୍ ସେଇ କଥା ତ ହଉଛି । ତୁମ ପାଖରେ ସବୁ ପସନ୍ଦସଇ ମନେ ହେଇପାରେ । ମୋ ପାଖରେ ତାହା ମନେ ହେଉନି । ତା ଉପରେ, ସମସ୍ତ କଥାଟା ଘଟିବ ଯେତେ ସବୁ ହିଂସୁକୁଟିଆ ଲୋକମାନଙ୍କ ଆଖି ଆଗରେ—ତାକୁ ଦେଖି ମୋର କଣ ହେବ । ତୁମର ଇଛା ଯାହା କରିପାର କିନ୍ତୁ ମୋର ଦୃଢ଼ ଧାରଣା ଏ ପରିସ୍ଥିତିରେ ମୁଁ କଦାପି ଖୁସିହେଇ ପାରିବିନି ।

ଏଇ ଫେଦୋର ଲିୟାମିନ ପିଲଟା ପାଇଁ ତାର ସବୁ ସର୍ବନାଶ । ସେରଗେଇ ଆଶା କରିଥିଲ କାତେରିନାକୁ ସର୍ବୋଚ୍ଚ ସମ୍ମାନରେ ବସାଇବା ପାଇଁ ସେ ଆଶା ପୂରଣର ସମ୍ଭାବନାରୁ ସେ ବଞ୍ଚିତ ହେଇଗଲ ।

ଅସଲ କଥା, ସ୍ୱାମୀ ଅନ୍ତର୍ଦ୍ଧାନର ନ'ମାସ ଭିତରେ ଯଦି କାତେରିନା ପ୍ରସବ କରେ ତେବେ ସମ୍ପତ୍ତିର ମାଲିକାଣୀ ସେ । ତା'ହେଲେ ତାଙ୍କର ସୁଖର ପରିସୀମା ବଢ଼ିଯିବ । କିନ୍ତୁ ମଝିରେ ଏଇ ଫେଦୋର ଟୋକାଟା ଉଡ଼ିଆସି ସବୁ ସର୍ବନାଶ କରିଦେଲ ବୋଲି ସେରଗେଇର ବଦ୍ଧ ଧାରଣା ।

...ଅକସ୍ମାତ୍ ସେରଗେଇ ଫେଦୋର ଲିଆମିନ୍ ଏବଂ ତାର ମାଲିକାନା ସତ୍ତ୍ୱ ସମ୍ବନ୍ଧରେ ସମସ୍ତ ଆଲୋଚନା ବନ୍ଦ କରିଦେଲ ।

ଫେଦୋରର ଚିନ୍ତା କାତେରିନାକୁ ଯେମିତି ଗ୍ରାସ କରି ବସିଲ । ଦୁଃଶ୍ଚିନ୍ତା ଆଶଙ୍କା ତାକୁ ଏମିତି ମୋହାଛନ୍ନ କରିଦେଲ ଯେ, ସେ ସେଇ ଜାଲ ଭିତରୁ ବାହାରି ପାରିଲନି । ଏମିତି କି ସେରଗେଇକୁ ଆଦର ସୁହାଗ କରିବାକୁ ଭୁଲି ରହିଲନି ।

ସବୁବେଳେ ଗୋଟିଏ ଚିନ୍ତା, କଉଠୁ ଗୋଟେ ପିଲ ଆସି ଜୁଟିଲ, ସେବେଠୁ ତାର ସର୍ବସ୍ୱ ଲୁଟ୍ ହେଇଗଲ ସତେ !

ବାହାରେ ପ୍ରଥମ ଶୀତର ଆମେଜ ଲଗିଛି । ଜିନୋଭିଇ ବରିସିଚ୍‌ର କୌଣସି ଖବର କଉଆଡ଼ୁ ଆସିଲ ନାହିଁ—ଆଉ କାତେରିନା ଧୀରେ ଧୀରେ ମୋଟେଇ ଯାଉଥିଲ । ସବୁବେଳେ ଗୋଟେ ଦୁଃଶ୍ଚିନ୍ତା ।

ଆଉ ସହର ସାରା ନାନା କଥା, ଏଟା କିପରି ହେଲା...ସେଟା କିପରି ହେଲା । ତାକୁ ନେଇ ସକାଳୁ ସଂଧ୍ୟା କଳ୍ପନାଜଳ୍ପନା ଗୁଜବ ଗୁଲି ନେଇ ମାତି ଉଠୁଥିଲା । ଯେମିତି କାତେରୀନାଟା ବଁାଝ ଥିଲା...ଆଉ ଦିନକୁ ଦିନ ପୋଇ ଦଣ୍ଡା ଭଳି ଶୁଖି ଯାଉଥିଲା...ଏଇନେ ହଠାତ୍ ସବୁ ଓଲଟି ଯିବାର ଲକ୍ଷଣ ଦିଶିଲାଣି ।

ସମ୍ପ୍ରତି ମାଲିକ ଲିଆମିନ୍ ଠେକୁଆ ଚମଡ଼ାର ହାଲ୍‌କା କୋଟ୍‌ଟା ପିନ୍ଧି ଘରବାଡ଼ି ଖେଳାଖେଳି କରୁଥିବ ନଚେତ୍ ସ୍ଲେଟ ସ୍ଲେଟ ଗାତରୁ ବରଫ ଖୋଳି ଖୋଳି ଭାଙ୍ଗି ପକଉଥିବ ।

ଗନ୍ଥୁଣୀ ଆକ୍‌ସିନିଆ ଅଗଣା ଉପର ଦେଇ ତା ପଛେ ପଛେ ପାଟି କରୁଛନ୍ତି—ଏ କଣ ହଉଛି ଫେଦୋର ଇଗନାତିଚ୍ ? ଖାନଦାନୀ ସୌଦାଗରର ପୁଅ ତୁମେ—ଏମିତି କଣ କରନ୍ତି ? ଗାତର କାଦୁଅ ପାଣିରେ ଖେଳା ଖେଳି କଣ ଶେଠ ପିଲାଙ୍କୁ ସାଜେ ?

କାତେରୀନା ଆଉ ତାର ବଳଭର ସବୁ କିଛି ଓଲଟ ପାଲଟ କରି ସମ୍ପତ୍ତିର ଭାଗିଦାର ନିରୀହ ପିଲାଟି ଘରସାରା—ଖଣ୍ଡମଣ୍ଡଳ ସାରା ନାଚିକୁଦି ଫଟେଇ ଦେଉଥି... ନଚେତ୍ ଦିଦିମା ପାଖରେ ଶୋଇ ରହେ ।

ଅତିବେଶି ଖେଳାଖେଳି ପାଣି କାଦୁଅ ହେବା ଯୋଗୁ ଲିଆମିନ୍‌କୁ ଜଳ ବସନ୍ତ ହେଲା । ତା ସହିତ ଛାତିରେ ବଥା । ବିଚରା ବାଧ୍ୟ ହୋଇ ଶୋଇ ରହିଲା । ଜଡ଼ିବୁଟି ଦେଇ ଚିକିତ୍ସା କରହେଲା, ଶେଷକୁ ଡାକ୍ତର ଡାକିବାକୁ ପଡ଼ିଲା । ଔଷଧ କେତେବେଳେ ଦିଦିମା ଖୁଆଏ, ନଚେତ୍ କାତେରୀନା ।

ଦିଦିମା କାତେରୀନାକୁ କହନ୍ତି—ମା, ପିଲାଟିକୁ ଟିକେ ଭଲ କି ଦେଖ୍ । ତୋର ମା ଦେହ ଭରି, ଚଲାଫେରା କରିବାକୁ ବଡ଼ କଷ୍ଟ ହେଉଥିବ...ମା ଷଷ୍ଠୀଙ୍କ କୃପା ପାଇଁ ତୁମେ ଅପେକ୍ଷା କରିଛ...ତଥାପି ପିଲାଟିକୁ ଟିକେ ନଜର ରଖିଥା ।

କାତେରୀନା ଅସମ୍ମତ ହେଉନି । ବୁଢ଼ୀ ଯେତେବେଳେ ଗୀର୍ଜାକୁ ଯାଆନ୍ତି କିମ୍ବା ଅହୋରାତ୍ର ଉପାସନାରେ ବସି ରୁହନ୍ତି ଅଥବା ଭୋରରୁ ଭୋରରୁ ପ୍ରଥମ ପୂଜା ପ୍ରସାଦ ଫେଦିୟା ପାଇଁ ଆଣିବାକୁ ଯାଆନ୍ତି, କାତେରୀନା ସେତେବେଳେ ଅସୁସ୍ଥ ପିଲାଟିର ପାଖରେ ବସନ୍ତି...ପାଣି ପିଇବାକୁ ଦିଅନ୍ତି...ସମୟମତ ଔଷଧ ଖାଇବାକୁ ଦିଅନ୍ତି ।

ଯେତେବେଳେ ଶୀତର ଉପବାସ ପର୍ବ ଆରମ୍ଭ ହୋଇଗଲା ବୁଢ଼ୀ ସେତେବେଳେ ଅଧିକାଂଶ ସମୟ ଗୀର୍ଜାରେ ରହିଲେ । ଫେଦିଆ ଯା ଭିତରେ ଆରୋଗ୍ୟ ହୋଇ ଆସିଲାଣି ।

କାତେରୀନା ଦିନେ ତା ପାଖକୁ ଗଲାବେଳକୁ ଦେଖିଲେ, ଫେଦିଆ ବିଛଣା ଉପରେ ବସି ସନ୍ଥଙ୍କ ଜୀବନ କାହାଣୀ ବହିଟିକୁ ପଢ଼ୁଥିଲା ।

କଣ ପଢ଼ୁଛ ଫେଜିଆ ?

ସନ୍ଥଙ୍କ ଉପରେ ଜୀବନୀ ପଢ଼ୁଛି ।

ଭଲ ଲାଗୁଛି ?

ଭାରି ଚମତ୍କାର ଲାଗୁଛି ।

ହଠାତ୍ କାହିଁକି କାତେରୀନା ଭିତରେ ଗୋଳେଇ ଘାଣ୍ଟି ହୋଇଗଲା ଭଳି ବୋଧକଲା । ପିଲାଟା ଆସି ସବୁ ତାର ସୁଖ ଛିଣ୍ଡେଇ ନେଲା । ଯଦି ସେ ଅନ୍ତର୍ଦ୍ଧାନ ହୋଇଯାଏ...

ତେବେ ଏଇନେ କଣ ବା କୁହାଯାଇ ପାରେ ? ପିଲାଟା ଅସୁସ୍ଥ, ତାକୁ ଔଷଧ ଖାଇବାକୁ ପଡ଼ୁଛି...ହଁ ଅସୁସ୍ଥ ଥିଲାବେଳେ କେତେ ରକମର ଅଘଟଣ ଘଟିପାରେ । ଲୋକ କଣ ଯେ କହିବେ ? କହିବେ, ଡାକ୍ତର ଭୁଲ ଔଷଧ ଦେଲାରୁ—

ତୁମର ଔଷଧ ଖାଇବାର ବେଳ ହୋଇଗଲା ଫେଦିଆ !

ହଁ, କାକୀମା । ତାପରେ ଚମଚରେ ଔଷଧ ଖାଇସାରି—ସନ୍ଥଙ୍କ ଜୀବନୀ କି ଅଦ୍ଭୁତ ସୁନ୍ଦର— !

କାତେରୀନା କହିଲା—ଆହୁରି ପଢ଼, ବେଶ୍‌କରି ପଢ଼ । ଏତକ କହି ଘରର ଚାରିପଟେ ନଜର କରିନେଲା । ଝରକାରେ କପଡ଼ାବାଲା ଖଡ଼ିଖଡ଼ିକୁ ବନ୍ଦ କରି ଫିତା ବାନ୍ଧିଦେଲା କାତେରୀନା । ତାପରେ ଫେରି ଆସିଲା ନିଜ ଘରକୁ ।

ପାଞ୍ଚମିନିଟ୍ ପରେ କାତେରୀନା ଘରକୁ ସେରଗେଇ ଆସିଲା । କାତେରୀନା କହିଲା—ଝରକାର ଫିତାବାଲା ଖଡ଼ଖଡ଼ି ଗୁଡ଼ାକ ବନ୍ଦ ହୋଇଛି ?

ସଂକ୍ଷେପରେ ହଁ କହି ଜଇଞ୍ଚରେ ମହମବତୀର ପୋଡ଼ା ସଳିତାଟାକୁ କାଟି-ଦେଲା ପରେ ଷ୍ଟୋଭ୍ ପାଖରେ ଆସି ବସିଲା ।

ସବୁ କିଛି ଚୁପ୍‌ଚାପ୍ ।

କାତେଷ୍ଟିନା ପଚାରିଲା—ଆଜି ରାତିରେ ଗୀର୍ଜାର ଉପାସନା ଅନେକ ସମୟ ଧରି ଚାଲିବ—ନା ?

ସେରଗେଇ କହିଲା—କାଲିକା ପର୍ବଟା ବଡ଼ ଧରଣର, ପୂଜା ବହୁସମୟ ଧରି ଚାଲିବ ।

ପୁଣି ସବୁ ଚୁପ୍‌ଚାପ୍ ।

କାତେଷ୍ଟିନା ଛିଡ଼ାହେଇ କହିଲା—ମୋତେ ତଳକୁ ଫେଦିଆ ପାଖକୁ ଯିବାକୁ ହେବ । ସେ ସେଠି ଏକଲା ଅଛି ।

ଭୁରୁ ତଳକୁ କରି ସେରଗେଇ କହିଲା—ଏକ୍‌ବାରେ ଏକଲା ?

ଏକ୍‌ବାରେ ଏକ୍‌ଲା ! କାତେଷ୍ଟିନା ଫିସ୍‌ଫିସ୍ କରି ଉତ୍ତର ଦେଇ ପଚାରିଲା—କାହିଁକି ?

ଦୁଇଜଣ ଦୁଇଜଣଙ୍କୁ ଅନାଅନି ହେଲେ କିନ୍ତୁ ପଦିଏବି ପାଟିରୁ କଥା ବାହାରିଲା ନାହିଁ ।

କାତେଷ୍ଟିନା ତଳ ଘରକୁ ଯାଇ ଏଘର ସେଘର ବୁଲାବୁଲି କରି ଭଲଭାବେ ତଦାରକ କରିନେଲା । ସବୁଆଡ଼େ ଶାନ୍ତ-ନିଶବ୍ଦ । ଆଇକନ ତଳୁ ମଙ୍ଗଳ ପ୍ରଦୀପ ନିଷ୍ପ୍ରଭ ଜ୍ୟୋତି ବିଚ୍ଛୁରି ପଡ଼ୁଥିଲା ।

ଫେଦିଆ ତକିଆ ଉପରେ ମୁଣ୍ଡରଖି ବହିପଢ଼ୁଥିଲା । କାତେଷ୍ଟିନା କହିଲା—ଏଥର ଶୋଇପଡ଼ ।

ନା, କାକୀମା, ମୁଁ ଦିଦିମାକୁ ଅପେକ୍ଷା କରିବି ।

କାହିଁକି ?

ମୋ ପାଇଁ ଅହୋରାତ୍ର ଉପାସନାର ନୈବେଦ୍ୟ ଆଣିବ ବୋଲି କହିଯାଇଛି ।

କାତେଷ୍ଟିନାର ମୁହଁ ହଠାତ୍ ପାଉଁଶିଆ ହେଇଗଲା । ହୃତ୍‌ପିଣ୍ଡରୁ ଏଇ ପ୍ରଥମ 'ସ୍ପନ୍ଦନ' ଶୁଣିପାରିଲା । ଛାତିଟା ତାର ଥରିମାଳି ଯାଉଥିଲା । ଥଣ୍ଡା ହାତକୁ ଘଷି ଘଷି ସେ ଘରୁ ବାହାରି ଆସିଲା ।

ଶୋଇବା ଘରେ ପହଞ୍ଚିଲା ବେଳକୁ ଷ୍ଟୋଭ୍ ପାଖରେ ଛିଡ଼ା ହେଇଛି ସେରଗେଇ । ଧୀର ଗଳାରେ ପଗ୍ଚରିଲା—ଏଠି ?

ସେରଗେଇ ଅସ୍ପଷ୍ଟ ଭବେ କହିଲା—କଣ ? ସତେ ତା ଗଳାରୁ କଥା ଟକ ଅଟକିଗଲା । ତାର ଶ୍ୱାସ ପ୍ରଶ୍ୱାସ ଭରି ହେଇଗଲା ।

କାତେଷ୍ଟିନା ହଠାତ୍ ଦ୍ୱାର ଆଡ଼କୁ ଯାଇ ଡାକିଲା—ଆସ ।

ସେରଗେଇ ଖାଲି ପାଦରେ ଯାଉଯାଉ—କଣ କଣ ସାଙ୍ଗରେ ନେବି ।

କାତେଷ୍ଟିନା ଅତି ସନ୍ତର୍ପଣରେ—କିଛି ନା । ତା'ପରେ ନୀରବରେ ସେରଗେଇର ହାତ ଧରି ତାକୁ ପଛେ ପଛେ ନେଇ ଗ୍ଲିଲ ।

ଏହାକୁ ମିଶେଇ ତିନିଥର କାତେଷ୍ଟିନା ଯେତେବେଳେ ଅସୁସ୍ଥ ପିଲାଟି ଘରେ ପହଞ୍ଚେ ସେତେବେଳେ ସେ ହଠାତ୍ ଭୟରେ କମ୍ପିଉଠେ ଆଉ ବହିଟା ତା' ହାତରୁ ଖସିପଡ଼େ ।

କଣହେଲା, ଫେଦିୟା ?

ବିଛଣାରେ ଜଡ଼ ଭଳି ଡରୁଥିବା ଫେଦିୟା ସ୍ମିତହାସ୍ୟ ଖେଳେଇ—ଓ···ହଠାତ୍ ଯେମିତି ଭୟ ପାଇଗଲି···କାକୀମା ।

କାହାକୁ ଦେଖିଲ···କଣ ପାଇଁ ?

ତୁମ ସହିତ କିଏ ଥିଲା କାକୀମା ?

କାହିଁ···ମୋ ସାଙ୍ଗରେ କେହି ନାହାନ୍ତି ?

କେହି ନଥିଲେ ?

ଫେଦିୟା ଖଟର ଶେଷ ପ୍ରାନ୍ତ ପର୍ଯ୍ୟନ୍ତ ଲମ୍ବା ହେଇ ତାର କାକୀମା ଯେଉଁ ଦରଜା ବାଟେ ଆସିଥିଲା ଭଲକି ଅନେଇଲା ପରେ ଆଶ୍ୱସ୍ତ ହେଲା ।

କହିଲା—ବୋଧେ ମୋର କିଛି ଭୁଲଧାରଣା ହେଇଗଲା ।

କାତେଷ୍ଟନା ଖଟ ବାଡ଼ାକୁ ଧରି ଛିଡ଼ାହୋଇଥିଲା । ଫେଦିୟା ସେ ଆଡ଼କୁ ଅନେଇ ରହିଥିଲା, କାହିଁକି କେଜାଣି କାକୀମାର ମୁହଁଟା ଆଜି ଅଲଗା ଅଲଗା ମାଲୁମ ପଡ଼ୁଛି ।

ଏହି ସମୟରେ ଗୋଟେ ମଚମଚ ଶବ୍ଦ ଶୁଭିଲା । ଫେଦିୟା କହିଲା ମୋ ନାଁରେ ଜଣେ କୁଳଗୁରୁଙ୍କ କଥା ଏଇ ବହିରେ ଲେଖା ହୋଇଛି ।

କାତେଷ୍ଟନା ଚୁପ୍ ହେଇ ଛିଡ଼ା ହେଲେ । ଫେଦିଆ କହିଲା—ତୁମେ ବସୁନାହଁ, କାକୀମା । ମୁଁ ସେ ଗପଟା ପଢ଼ି ଶୁଣେଉଛି ।

କାତେଷ୍ଟନା କହିଲା—ଟିକିଏ ରହ, ମୁଁ ଫେରିଆସେ । ଏହାକହି ସେ ତଳକୁ ଚାଲିଗଲା । ପାଖ ଘରେ ଖୁବ୍ କ୍ଷୀଣ କଣ୍ଠରେ କଥାବାର୍ତ୍ତା ଚାଲିଲା ସତ୍ତ୍ୱେ ଫେଦିଆ କାନକୁ ସେତକ ପହଞ୍ଚି ପାରୁଥିଲା ।

କାନ୍ଦିଲା ଭଳି ଫେଦିଆ ଚିତ୍କାର କରିଛି—କାକୀମା, ସେଠି କଣ ହଉଛି ? କା' ସହିତ ତୁମେ କଥାବାର୍ତ୍ତା କରୁଛ ?…ତୁମେ ଏଆଡ଼କୁ ଆସ…ମୋତେ ଡର ମାଡୁଛି ।

ଏଥର କାତେଷ୍ଟନା ଫେରିଆସି ବିରକ୍ତ ହେଇ କହିଲା—ତୁମେ ଖାଲିଖାଲି ଡରୁଛ…ଓ ତା ପରେ ପରେ କହିଲା—ଏମିତି ଭବରେ ଚୁପ୍‌ଚାପ୍ ଶୋଇରୁହ ।

ମୋତେ ଡର ମାଡୁଛି, ଶୋଇବାକୁ ଭଲ ଲାଗୁନି କାକୀମା ।

ନା…ନା, ତୁମେ ଏଥର ଶୁଅ…ମୋ କଥା ମାନି ଶୁଅ…ରାତି ଅନେକ ହେଇଗଲାଣି ।

କିନ୍ତୁ କାଇଁକି କାକୀମା, ମୋର ମୋଟେ ଇଛା ହେଉନି ଶୋଇବାକୁ ।

କହୁଛି ଶୋଇପଡ଼ । କାତେଷ୍ଟନାର ସ୍ୱର ରୁକ୍ଷ ହେଇଗଲା । ସେ ଫେଦିଆକୁ ଜବରଦସ୍ତ ଶୋଇପକେଇବାକୁ ବଳପ୍ରୟୋଗ କଲେ ।

ଆଉ ସେଇ ମୁହୂର୍ତ୍ତରେ ଖାଲି ପାଦରେ ସେ ଘର ଭିତରକୁ ସେରଗେଇ ପ୍ରବେଶ କରିବାର ଦେଖିଛି ଫେଦିଆ ।

ଭୟରେ ପିଲଟା ବଡ଼ ଆଁ କରି ପକେଇଛି । କାତେରୀନା ସଙ୍ଗେ ସଙ୍ଗେ ହାତରେ ତା ମୁହଁକୁ ଚିପି ଧରିଲା । କଡ଼ା ଗଳାରେ କହିଲା—ଶୀଘ୍ର କର, ଚାପି ଧର ପିଲଟିକୁ...ଜୋର ନ କରି ।

ସେରଗେଇ ପିଲଟିର ଦୁଇହାତ ଗୋଡ଼ ଚିପି ଧରିଲା । ସଙ୍ଗେ ସଙ୍ଗେ କାତେରୀନା ଏକ ଝଟକାରେ ଗୋଟେ ବଡ଼ ତକିଆ ନେଇ ପିଲର ମୁହଁ ଉପରେ ଢାଙ୍କି ରଖିଲା ଆଉ ତା ଉପରେ କାତେରୀନା ନରମ ତଥା ଅର୍ଦ୍ଧଶକ୍ତ ସ୍ତନସହ ଚାପି ରଖିଲା ।

କବର ଭିତରେ ଯେଉଁ ସ୍ତବ୍ଧତା, ପ୍ରାୟ ଚାରି ମିନିଟ୍ ଧରି ସେଠା ବିରାଜ କଲା । ଅତି ଧୀର କଣ୍ଠରେ କାତେରୀନା କହିଲା—ତାହାର ହେଇ ଗଲାଣି । କିନ୍ତୁ... ଛିଡ଼ାହେଇ ସବୁକିଛି ଗୋଛେଇ ଗାଛେଇ ରଖିଲା ବେଳକୁ ବହୁ ଲୁଚା ପାପର ରଙ୍ଗଭୂମି ନିସ୍ତବ୍ଧ ଘର ଖଣ୍ଡକୁ...କାନ୍ଥ ଗୁଡ଼ିକୁ ସଶବ୍ଦ ତୀବ୍ର ମୁଷ୍ଟ୍ୟାଘାତରେ ସତେ ଟଳମଳ କରିଦେଲା । ଝରକା ଗୁଡ଼ାକ ଖଡ଼ଖଡ଼ ହେଇଗଲା, ଘରର ଚଟାଣ ଦୁଲକି ଉଠିଲା, ମଙ୍ଗଳ ଦୀପ ଜଳୁଥିବା ଚେନ୍‌ଟି ପବନରେ ଦୋହଲିବାରେ ଲାଗିଲା ।

ସେରଗେଇ ଗୋଟେ ତୀବ୍ର ଆତଙ୍କରେ ଘରୁ ବାହାରିଗଲା । କାତେରୀନା ବି ତାକୁ ଧରିବାକୁ ଦୌଡ଼ିଗଲା । କାତେରୀନାର ଭୟ ହେଉଥିଲା, କାଳେ ସେରଗେଇ ବାହାରେ କଥାଟାକୁ ପ୍ରକାଶ କରିଦେବ କି କଣ । କିନ୍ତୁ ହଠାତ୍ ଅନ୍ଧାରରେ ଗୋଟେ ଦରଜା ସହ ପିଟି ହେଇ ଗଲାରୁ ଆର୍ତ୍ତନାଦ ସହ ସିଡ଼ିରୁ ଗଡ଼ିଗଡ଼ି ଖସି ଆସିଲା ତଳକୁ ସେରଗେଇ ।

ତା ପାଟିରୁ କେବଳ ଶୁଣାଗଲା—ଜିନୋଭିଇ ବରିସିଚ୍ ! ଜିନୋଭିଇ ବରିସିଚ୍ ! ଆଉ ସଙ୍ଗେ ସଙ୍ଗେ କାତେରୀନା ପଚାରିଲା—କଉଠି ? ସେରଗେଇ ଆର୍ତ୍ତ ଚିତ୍କାର କରି କହିଲା—ଏଇ ଯେ, ଏଇ ତ ଏଇଠି ସେ ଗୋଟେ ଲୁହା ଛଡ଼ରେ ପିଟି ଉଡ଼ିଗଲା । ଏଇ ତ ସେ ଆସୁଛି ଶୁଣ, ସେ ଗର୍ଜନ କରୁଛି— ।

କାତେରୀନା ତୀକ୍ଷ୍ଣ କଣ୍ଠରେ କହିଲା—ଉଠ୍ ଉଠ୍, ଗଧା କଉଠିକାର । କଥା ଟିକ ସାରି ଛୁଟିଗଲା ପୁଣି ଫେଦିଆ ଘର ଆଡ଼କୁ । ମଲା ପିଲଟିର ମୁହଁକୁ ତକିଆ ଉପରେ ସଜେଇ ଶୋଇଦେଲା ସତେ ନିଦରେ ଶୋଇଛି ।

ତାପରେ ସେ ଘରୁ ଫେରିଲାବେଳେ ବାହାରପଟୁ କବାଟ ବନ୍ଦ ହୋଇ-ଥିବାରୁ ଖୁବ୍ ଜୋରରେ ଖୋଲି ପଦାକୁ ଯିବାବେଳେ ଦେଖିଲେ ଅନେକ ଲୋକ ଦଳ ଦଳ ହୋଇ ତାଙ୍କ ପାଚେରୀ ଡେଇଁ ଅଗଣା ଆଡ଼କୁ ଛୁଟି ଆସୁଛନ୍ତି ।

ଏଇ ପ୍ରଚଣ୍ଡ ଉତ୍ତେଜନା, ହେଲା କିପରି ! ବର୍ଷକୁ ବାରେଟି ପର୍ବ ପୂର୍ବଦିନ ରାତିରେ ସହରକୁ ହଜାର ହଜାର ଭକ୍ତ ଆସି ଗୀର୍ଜାରେ ଭର୍ତ୍ତି ହୋଇଯାନ୍ତି । ସହର ହେଲେବି ମଫସଲ ଭଳି, ତଥାପି ବ୍ୟବସାୟ ବାଣିଜ୍ୟରେ ଶିଳ୍ପୋତ୍ପାଦନ ନଗଣ୍ୟ ନୁହଁ । ଫଳରେ ଭୋର ସମୟକୁ ଏକତ୍ରିତ ପ୍ରାର୍ଥନା ହେଲାବେଳେ ସେଠି ସୋରିଷ ପଡ଼ିବା ଭଳି ଜାଗା ମିଳେନି । ସେଦିନ ଗୀର୍ଜାରେ ସମବେତ ଧର୍ମ ସଙ୍ଗୀତ ଗାଆନ୍ତି ସହରର ବଣିକ ସମ୍ପ୍ରଦାୟର ତରୁଣ ଦଳ । ତେଣୁ ଭିଡ଼ ପ୍ରବଳ ହୁଏ ଗୋଟିଏ ଗୀର୍ଜାରେ । ସମସ୍ତେ ଚାହାଁନ୍ତି ଯେମିତି ହେଉ ଅର୍ଗାନ ସହିତ ସ୍ୱର ମିଳେଇ ଅଷ୍ଟ-କଣ୍ଠ-ସଙ୍ଗୀତ ଗାଇବାକୁ । ସେଦିନ ନରକ କୁଣ୍ଡଠୁ ଅଧିକ ଗରମ କି ଶୀତ ହେଉ-ଥାଉ—ଏପରିକି ଗୀର୍ଜାର ବାହାର ଅଗଣାରେ ହେଉ କି ଝରକା ତଳେ ଛିଡ଼ାଛିଡ଼ା ହୋଇ ହେଉ ।

କୁମାରୀ ମା' ମେରୀଙ୍କ ପର୍ବ । ସେଇ ରାତିରେ ଯେତେବେଳେ ଫେଦିଆକୁ ନେଇ ସେରଗେଇ ଓ କାତେରୀନା ଭିତରେ ନାଟକ ଚାଲୁଥିଲା ସେତେବେଳେ ସହରର ତରୁଣ ଗୋଷ୍ଠୀ ଗୀର୍ଜାରେ ଭିଡ଼ କରୁଥିଲେ । ଏବଂ ଗୀର୍ଜାରୁ ଫେରିଲାବେଳେ ଓସ୍ତାଦୀ ଢଙ୍ଗରେ ପ୍ରାର୍ଥନା ସଙ୍ଗୀତ ବୋଲି ବୋଲି ଫେରୁଥିଲେ ରାସ୍ତାରେ । କିନ୍ତୁ ସମସ୍ତଙ୍କୁତ ସଙ୍ଗୀତ ଉପରେ ଆଲୋଚନା କରିବାକୁ ଭଲଲାଗେ ନାହିଁ । ତାଙ୍କ ଭିତରେ ଜଣେ କଳକବ୍ଜା କାମ କରୁଥିବା ଟୋକା ଥିଲା; ତାକୁ ଏଠାର ଜଣେ ମିଲ୍‌ମାଲିକ ଲେଲିନଗ୍ରାଦ୍‌ରୁ ଆମଦାନୀ କରିଛି । ଇସମାଇଲଫ୍‌ଙ୍କ ଘର ପାଖାପାଖି ହେଲାକ୍ଷଣି ସେ କହିଲା—ସମସ୍ତେ କହୁଛନ୍ତି ଗଣ୍ଡ ମାଇକିନାଟା ଗୋଟେ କିରାଣୀ ସେରଗେଇକୁ ନେଇ ରସକେଳି ଅଷ୍ଟପ୍ରହର କରୁଛି ।

ଆଉ ଜଣେ କହିଲା—ଯାଃ, ଏକଥା ସମସ୍ତେ ଜାଣନ୍ତି ।

ହେଲେ ଦେଖ ଆଜି ସେ ଗୀର୍ଜାକୁ ବି ଯାଇନି ।

ଗୀର୍ଜାକୁ ? କଣ ଯେ କହୁଛୁ ! ବଦମାସ ମାଇକିନାଟା ପାପର କାହୁଅ ସହିତ ଏବେ ବି···ଆଜିଭଳି ପର୍ବ ଦିନରେ ମାତିଛି ?

ସେଇ କଳକବ୍ଜା ମେକାନିକ ଟୋକାଟି ହାତ ବଢ଼େଇ କହିଲା—ହେଇ ଦେଖ ତା' ଘର ଭିତରୁ ଆଲୁଅ ଜଳୁଛି ।

ଆଉ ଜଣେ କହିଲା, ଚାଲବେ ସେ କୋଠା ଝରକା ପାଖକୁ ଯାଇ ଦେଖିବା ଘର ଭିତରେ କି କି କାଣ୍ଡ ଚାଲିଛି— ।

ଦୁଇଜଣଙ୍କ କାନ୍ଧ ଉପରେ ଭର ଦେଇ ମେକାନିକ ଟୋକାଟି ଝରକା ଫାଙ୍କ ଭିତରୁ ଭଲକି ନଜର କଲା ପରେ ଚିତ୍କାର କରି ଉଠିଲା ଭାଇମାନେ, ଦୌଡ଼ି ଆସ କେମିତି ଗୋଟେ ପିଲାକୁ ଦମ୍ ବନ୍ଦକରି ମାରିବାକୁ ଲାଗି ପଡ଼ିଛନ୍ତି ।

ତା ଦେଖାଦେଖି ଅନ୍ୟମାନେ କୁଦାକୁଦି କରି ଝରକା ଭିତରୁ ଘର ଭିତର ଦୃଶ୍ୟ ଦେଖିବାକୁ ଉଦ୍‌ଗ୍ରୀବ ହେଇ ପଡ଼ିଲେ ଏବଂ ଏ କଥାଟା କ୍ରମେ କ୍ରମେ ସହରରେ ହୋଇ ଯିବାରୁ ଭିଡ଼ଟା ବଢ଼ିଗଲା ଗୀର୍ଜାଠାରୁ ବେଶି ଇସମାଇଲଫ୍ ଘର ଚାରିପଟେ ।

ଫେଦିଆର ମୃତଦେହ ପାଖରେ ଛିଡ଼ାହେଇ ମେକାନିକ୍ ଟୋକାଟି ସାକ୍ଷୀ ଦେଲା—ମୁଁ ନିଜେ ଦେଖିଛି, ମୁଁ ସ୍ୱଚକ୍ଷୁରେ ଦେଖିଛି, ପିଲାଟିକୁ ଚିତ୍‌କରି ବିଛଣା ଉପରେ ପକେଇ ଦୁଇଜଣ ମିଳି ତା ଦମ୍ ବନ୍ଦ୍‌କରି ମାରିଦେଲେ ।

ସେଇଦିନ ରାତିରେ ସେରଗେଇକୁ ପୋଲିସ ଥାନାକୁ ନେଇଗଲା । ଦୁଇଜଣ ପ୍ରହରୀ କାତେରିନାକୁ ତା ଶୋଇବା ଘରେ ନଜରବନ୍ଦୀ କରି ଜଗି ରହିଲେ ।

ଇସମାଇଲଫ୍‌ଙ୍କ ଘର ଭିତରେ ଅସହ୍ୟ ଶୀତ । ଘର ଗରମ କରିବାକୁ ଷ୍ଟୋଭ୍ କି ଆଁଞ୍ଜ ଜଳା ଯାଇନି, ସଦର ଦରଜା ସବୁବେଳେ ଖୋଲା କାରଣ ଜଙ୍ଗଲ ପରେ ଜଙ୍ଗଲ କୌତୁହଳୀମାନେ ଆସି ପଶି ଯାଉଛନ୍ତି । କଫିନ୍ ଭିତରେ ଶୋଇ ରହିଥିଲା ଫେଦିୟା । ଡାକ୍ତର ରିପୋର୍ଟରେ ଲେଖି ଦେଇଛନ୍ତି ପିଲାଟିର ମୃତ୍ୟୁ ନିଶ୍ୱାସ ପ୍ରଶ୍ୱାସ ବନ୍ଦ କରିବା ଫଳରେ ଘଟିଅଛି ।

ସେରଗେଇକୁ ଫେଦିଆର ମୃତଦେହ ପାଖରେ ଛିଡ଼ା କରେଇ ପାଦ୍ରୀ ତାକୁ କେତୋଟି ଶାସ୍ତ୍ରାନୁମୋଦିତ ପ୍ରଶ୍ନ ସହ ଭଲମନ୍ଦ, ପାପ-ପୁଣ୍ୟ ସମ୍ପର୍କରେ

କହୁଥିଲାବେଳେ ସେରଗେଇ ହାଉହାଉ ହେଇ କାନ୍ଦି ଉଠିଲା ଓ ଫେଦିଆର ଏ ଖୁନ୍ କେବଳ ନୁହଁ...ଆଉ ହାତ ଯୋଡ଼ି କହିଲା ଜିନୋଭିଇଙ୍କ ଶବକୁ ଶୀଘ୍ର ଖୋଳି ବାହାର କରନ୍ତୁ ।

ଯା'ହେଉ ଜିନୋଭିଇର ଶବ ସେବେସୁଦ୍ଧା ପଚି ଯାଇନଥିଲା । ତାକୁ ମଧ୍ୟ ଏକ ବଡ଼ କଫିନ୍ ଭିତରେ ସଜେଇ ରଖାଗଲା । ସେରଗେଇ ସମସ୍ତ ପାପ-କାହାଣୀ ବର୍ଣ୍ଣନା କଲା ପରେ, ଦୁଇଟି ପାପର ସହକର୍ମିଣୀ ରୂପେ ଯୁବତୀ ଗୃହ-କର୍ତ୍ତ୍ରୀର ନାଁ ଉଲ୍ଲେଖ କଲା ।

ସବୁ ପ୍ରଶ୍ନର ଉତ୍ତରରେ କାତେରିନା ଲଭଭନା'ର ମାତ୍ର ଗୋଟିଏ କଥା—ମୁଁ ଏ ସବୁ ବିଷୟରେ କିଛି ଜାଣି ନାହିଁ ।

ସେରଗେଇକୁ କାତେରିନା ସାମ୍ନାରେ ମୁହାଁମୁହିଁ ବସେଇ ତାଠୁ କାତେରୀନା ବିରୁଦ୍ଧରେ କହିଥିବା ସାକ୍ଷ୍ୟ ଗ୍ରହଣ କରାଗଲା । ତାର ସ୍ୱୀକୃତି ଶୁଣି କାତେରୀନା ନୀରବ ବିସ୍ମୟତାରେ କେବଳ ଅନାଇଲା ସେରଗେଇ ଆଡ଼କୁ । ସେଇ ଚାହାଣୀରେ ନଥିଲା କୌଣସି ରାଗର ଲକ୍ଷଣ । କେବଳ ତାଚ୍ଛଲ୍ୟରେ କହିଲା—ସେ ଯେବେ ସବୁ କିଛି କହିବାପାଇଁ ଏତେ ଉତ୍ସୁକ ସେତେବେଳେ ମୋର କୌଣସି ଅସ୍ୱୀକାର କରିବାକୁ ଆଉ କଣ ଅଛି ! ମୁଁ ସେଇ ଦୁଇଜଣକୁ ଖୁନ୍ କରିଛି ।

ସମସ୍ତେ ପଚାରିଲେ—କିନ୍ତୁ କାହିଁକି, କଉଥି ପାଇଁ ?

କାତେରୀନା ସେରଗେଇ ଆଡ଼କୁ ଇଙ୍ଗିତ କରି କହିଲା—ତା' ପାଇଁ । ସେରଗେଇ ମୁଣ୍ଡଟାକୁ ତଳକୁ କରିଦେଲା କେବଳ ।

ଆସାମୀ ଦି ଜଣଙ୍କୁ ଜେଲରେ ପୂରାଗଲା । ଏଇ ବୀଭତ୍ସ କାଣ୍ଡଟା ଜନସାଧାରଣଙ୍କ ପାଖରେ ଏମିତି ଗୋଟେ କୌତୂହଳ-ଘୃଣାଦାୟକ ଆଉ କ୍ରୋଧ ସଞ୍ଚାରକ କରିଥିଲା ଯେ—ତାଙ୍କର ବିଚାର ଖୁବ୍ ଶୀଘ୍ର ସରିଗଲା । ଫେବୃଆରୀ ମାସ ଶେଷ ଆଡ଼କୁ ସେରଗେଇ ଓ କାତେରୀନାକୁ ଅଦାଲତରେ ରାୟ ଶୁଣାଇ ଦିଆଗଲା—

ତାଙ୍କୁ ଏଇ ସହରର ଖୋଲା ହାଟରେ ପ୍ରଥମେ ଚାବୁକରେ ପ୍ରହାର କରାହେବ ଏବଂ ତା'ପରେ ସାଇବେରିଆକୁ କଠିନ ସଶ୍ରମ କାରାଦଣ୍ଡରେ ଉଭୟଙ୍କୁ ନିର୍ବାସନ କରାଯିବ ।

ମାର୍ଚ୍ଚ ମାସର ଏକ ଭୋରରୁ ନିଦାରୁଣ ଶୀତରେ ଗ୍ରବୁକ୍‌ଦାର ଗଣି ଗଣି ଅଦାଲତ ସ୍ଥିର କରିଥିବା ସଂଖ୍ୟା ଗ୍ରବୁକରେ ପ୍ରହାର କରଗଲା । ସର୍ବାଙ୍ଗ ରକ୍ତାକ୍ତ ଅବସ୍ଥାରେ ଦଣ୍ଡମଞ୍ଚରୁ ଓହ୍ଲେଇ ଆଣିଲା ବେଳେ ସେରଗେଇ ବାରବାର ଝୁଣ୍ଟି ପଡ଼ୁଥିଲେ, ପକ୍ଷାନ୍ତରେ କାତେଗ୍ୱିନା ଓହ୍ଲେଇ ଆସୁଥିଲେ ଦୃଢ଼ ପଦକ୍ଷେପରେ—ତା ମନରେ ଗୋଟିଏ ମାତ୍ର ଦୁଶ୍ଚିନ୍ତା ଥିଲା ତା ପିଠିରୁ ଯେମିତି ଖସଖସିଆ ଶେମିଜ୍ ଖଣ୍ଡକ ଦେହରୁ ଖସି ନପଡ଼ୁ ।

ଏମିତି କି ଜେଲ ହସପିଟାଲରେ ଯେତେବେଳେ ତାକୁ ତାର ସଦ୍ୟଜାତ ଶିଶୁଟିକୁ ଦେଖେଇ ଦିଆଗଲା ସେ ଟିକିଏ ବିଚଳିତ କଣ୍ଠରେ କହିଥିଲା—ଆଃ, କିଏ ଏଟାକୁ ଗ୍ରହେଁ ! ଏତକ କହି ମୁହଁ ବୁଲେଇ ହସପିଟାଲ କାନ୍ଥ ଆଡ଼କୁ ଅନେଇ ରହିଲା ।

ସେରଗେଇ ଓ କାତେଗ୍ୱିନା ଅନ୍ୟାନ୍ୟ କୟେଦୀଙ୍କ ସହ ସାଇବେରିଆ ଉଦ୍ଦେଶ୍ୟରେ ବାହାରିଲେ ବସନ୍ତ ଋତୁରେ । ପାଞ୍ଜିରେ ସେତେବେଳେ ଲେଖାଥିଲା ବସନ୍ତ ଋତୁ କିନ୍ତୁ ଅସଲରେ ସେତେବେଳେ ଏଇ କଥାଟା ପ୍ରବାଦ ଭଳି ସତ୍ୟ—ସୂର୍ଯ୍ୟ ଯଥେଷ୍ଟ ଆଲୋକ ଦିଅନ୍ତି କିନ୍ତୁ ଦିଅନ୍ତି ଅତି ଅଳ୍ପ ଉଷ୍ଣତା !

କାତେଗ୍ୱିନାର ପୁଅଟିକୁ ବରିସ୍ ତିମୋତେଇଭିଚର ସେଇ ବୁଢ଼ୀ ମାମୁଁ ଝିଅ ଭଉଣୀ ହାତରେ ରକ୍ଷଣାବେକ୍ଷଣ ପାଇଁ ହସ୍ତାନ୍ତର କରଗଲା । କାରଣ ସେ ଦଣ୍ଡିତା ରମଣୀର ନିହତ ସ୍ୱାମୀର ଆଇନସମ୍ମତ ସନ୍ତାନ ରୂପେ ସ୍ୱୀକୃତ ହେଲା ବୋଲି ଏବେଠାରୁ ସେ ଇସମାଇଲଫ୍ ଏବଂ ଫେଦିଆର ତାବତ୍ ସମ୍ପତ୍ତିର ଏକମାତ୍ର ସ୍ୱତ୍ୱାଧିକାରୀ । ଏ ବ୍ୟବସ୍ଥାରେ କାତେଗ୍ୱିନା ଯଥେଷ୍ଟ ସନ୍ତୁଷ୍ଟ ଥିଲା ଏବଂ ପିଲଟିକୁ ଛାଡ଼ିଦେଲା ଗୋଟେ ପରିପୂର୍ଣ୍ଣ ତାଚ୍ଛଲ୍ୟରେ ।

ସତ କହିଲେ କାତେଗ୍ୱିନାର ଜୀବନରେ ଏବେ ଆଉ କିଛି ଅସ୍ତିତ୍ୱ ନାହିଁ, ଆଲୋକ ନାହିଁ, ନାହିଁ ବି ଅନ୍ଧକାର । ନା ଅଛି ଅମଙ୍ଗଳ ନା ଅଛି ମଙ୍ଗଳ, ଦୁଃଖ ନାହିଁ—ସୁଖ ବି ନାହିଁ । ସେ କିଛି ବୁଝି ପାରୁ ନଥିଲା, କାହାକୁ ଭଲ ପାଇପାରୁ

ନଥିଲ, ଏପରିକି ନିଜକୁ । ଅର୍ଥିର ଭବେ ସେ କେବଳ ପ୍ରତୀକ୍ଷା କରୁଥିଲ ଗୋଟେ ଜିନିଷକୁ—କଏଦୀ ଦଳ ପଠାଯିବାର ସମୟ କେବେ, କାରଣ ତା ହୃଦୟରେ ତଥାପି ଏକମାତ୍ର ଆଶା, ଦଳ ଭିତରୁ ସେ ସେରଗେଇକୁ ଆଉଥରେ ଦେଖି ପାରିବ ।

ତାର ଆଶା ତାକୁ ଫାଙ୍କି ଦେଲ ନାହିଁ । ଦେହସାର ଓଜନିଆ ଜଞ୍ଜିର ବୋହି ବୋହି ସେରଗେଇ ବି ବାହାରିଲ ତାଙ୍କର ସେଇ ଛୋଟ ଦଳଟିରେ ।

ଯେତେ ଘୃଣା ହଉ କି ନ ହେଉ, ମଣିଷ ସବୁବେଳେ ନିଜକୁ ଖାପଖୋଇ ନିଏ ଏବଂ ସବୁ ଅବସ୍ଥାରେ ନିଜ ନିଜ ଛୋଟ ଆନନ୍ଦ ସୁଖର ସନ୍ଧାନରେ ସାଧମତ ଚେଷ୍ଟା କରିଥାଏ । କିନ୍ତୁ କୌଣସି ଅବସ୍ଥାରେ ନିଜକୁ ଖାପଖୋଇ ନେବାର ପ୍ରୟୋଜନ କାତେୟୁନାର ନଥିଲ । ସେ ସେରଗେଇକୁ ଆଉଥରେ ଦେଖିବାକୁ ପାଇଲ, ଏବଂ ତା ସହିତ ମନେହେଲ ନିର୍ବାସନ ଦଣ୍ଡ ତା ପାଖରେ ଆନନ୍ଦଫୁଲରେ ଆଚ୍ଛାଦିତ ଗୋଟିଏ ମାତ୍ର ରାସ୍ତା ।

କାତେୟୁନା ତା ଛିଟ ବ୍ୟାଗ୍‌ରେ ମୂଲ୍ୟବାନ ଜିନିଷ ଅଳ୍ପ କିଛି ରଖିଛି, ଏବଂ ଆର୍ଥିକ ସମ୍ବଳ ଥିଲ ଖୁବ୍ କମ୍ । ସେତକ ବି ବାଟରେ ସବୁ ଖର୍ଚ୍ଚ ହେଇ ସରିଗଲଣି । କାରଣ ପହରଦାରମାନଙ୍କୁ ଘୁଷ୍ ଦେଇଥିଲ ଯେମିତି ତାକୁ ସେରଗେଇ ପାଖାପାଖି ନିଆଯାଏ ।

ହୁଏତ କେଉଁଠି ଟିକିଏ ଅନ୍ଧାର ଭିତର ତାକୁ ଆଲିଙ୍ଗନ କରିପାରିବ ।

ସେମିତି ଅବସ୍ଥାରେ ସେରଗେଇ କେତେଥର କହି ସାରିଛି—ଏଇ ଅନ୍ଧାର ଭିତରେ ଛିଡ଼ା ହେଇ ଗୋଡ଼ ତଳୁ ମାଟି ଖୋଳିବା ପାଇଁ ପହରଦାରଙ୍କୁ ପଇସା ସବୁ ଦେଇଦେଲ, ମୋତେ ନେଇଥିଲେ ପାରିଥାନ୍ତ !

ମିମତିଭରା କଣ୍ଠରେ କାତେୟୁନା କହିଛି—ମୁଁ ତ ମାତ୍ର ପଚିଶ୍‌ଟା କପେକ୍ ଦେଇଛି— ।

ପଚିଶ୍ କପେକ୍ କଣ ପଇସା ନୁହଁ ? ପଚିଶ୍ କପେକ୍ କଣ ରାସ୍ତାରେ ଗୋଟାଇଲେ ମିଳି ପାରିବ ? ଏତେ କପେକ୍ କେଇଥର ପାଇଛ ତୁମେ ?

କିନ୍ତୁ ଏହାଦ୍ୱାରା ଆମେ ପ୍ରତ୍ୟେକଙ୍କୁ ଦେଖିବାକୁ ସୁଯୋଗ ପାଇଲେ । ସତରେ ? ସେଟା କଣ ସହଜ ? ଏଥିରେ ମୁଁ କି ଆନନ୍ଦ ପାଇବି···ଏତେ ସବୁ ନରକ

ଯନ୍ତଣା ପରେ ? ମୋର ଇଚ୍ଛା ହେଉଛି, ମୋ ଜୀବନଟାକୁ ଅହରହ ଅଭିସମ୍ପାତ କରିବାରେ, ଆଉ ଏ ଧରଣର ମିଳନ ଉପରେ ମୋର ଭରସା ବି ନାହିଁ !

କିନ୍ତୁ...ତୁମକୁ ଦେଖି ପାରିଲେ, ମୋର ତ ଅନ୍ୟ କୌଣସିରେ ଆସେ ଯାଏ ନାହିଁ ।

ଏସବୁ ଘୋର ଆହାମ୍ମକୀ ! ଏହା ହେଲା ସେରଗେଇର ଉତ୍ତର । ଏସବୁ ଉତ୍ତରରେ କାତେଶ୍ୱନା କେବେ ଆପଣା ଓଠ କାମୁଡ଼ି କାମୁଡ଼ି ରକ୍ତ ବାହାର କରିଛି, ଆଉ କେବେ କେବେ ଗର୍ହି ମିଳନର ଅନ୍ଧାରରେ ଅଶ୍ରୁବର୍ଷଣରେ ଅନଭ୍ୟସ୍ତ ତାର ଆଖି ଦୁଇଟି ତିକ୍ତତାରେ ତୀବ୍ର ଯନ୍ତ୍ରଣାରେ ଭରି ଯାଇଛି—କିନ୍ତୁ ସବୁ ସେ ବରଦାସ୍ତ କରିଗଲା ନୀରବରେ 'ଯାହା ଘଟିବାକୁ ଯାଉଛି...ତଥାପି କିନ୍ତୁ ନିଜକୁ ଫାଙ୍କି ଦେବାକୁ ଭୁଲ୍ କଲା ନାହିଁ ।

ଉଭୟଙ୍କ ମଧ୍ୟରେ ଏଇ ନୂଆ ସମ୍ପର୍କ ନେଇ ସେମାନେ ନିଜ୍‌ନି ନଫ୍‌ଗରଦ୍- ଠାରେ ପହଞ୍ଚିଲେ । ଏଠାରେ ଆଉ ଦଳେ କଏଦୀ ଦଳ ମସ୍କୋରୁ ଆସି ଯୋଗ ଦେଲେ—ସାଇବେରିଆ ଯିବା ପାଇଁ ।

ନବାଗତ 'ଏଇ ବିରାଟ ବାହିନୀର ହରେକ ରକମ ବିଚିତ୍ରତା ଭିତରେ ସ୍ତ୍ରୀ ଲୋକଙ୍କ ଦଳରେ ଥିଲେ ଦୁଇଜଣ । ଜଣକର ନାଁ ତିୟୋନା, ଜଣେ ସିପାହୀର ସ୍ତ୍ରୀ । ବିଚିତ୍ର ତାର କାମବିଳାସିନୀ ଚରିତ୍ର । ଲମ୍ବା ଆଉ ଗୋଚ୍ଛାଏ ମୁଣ୍ଡରେ ଚୂଳ, ମଦିରାଳସ ହରିଦ୍ରାଭ ଆଖି । ଅନ୍ୟ ଜଣଟିର ଦେହର ବର୍ଣ୍ଣ ମୁଲାୟେମ ଗୋଲାପୀ, ମୁହଁଟି ଛୋଟ, ଛୋଟ ଗାଲ ଦୁଇଟି ଉପରେ ଦୁଇଟି ଗର୍ତ୍ତ ଆଉ କଏଦୀଙ୍କ ମୁଣ୍ଡବନ୍ଧା ଛିଟ ରୁମାଲ ତଳୁ କପାଳ ଉପରକୁ ଓହ୍ଲେଇ ଆସିଛି ଢେଉଖେଳା ସୁନେଲୀ ଚୂଳ । ଦଳର ସମସ୍ତେ ତାକୁ ସୋନେତ୍‌କା ନାମରେ ଡାକନ୍ତି ।

ସୁନ୍ଦରୀ ରମଣୀ ତିୟୋନାର ସ୍ୱଭାବ ଥିଲା ଶାନ୍ତ । ଦଳର ସବୁ ପୁରୁଷ ତାକୁ ଚିହ୍ନିଥିଲେ ଏବଂ ତାକୁ ଜୟ କରିବାକୁ ସକ୍ଷମ ଲାଳସାରେ ଅତ୍ୟଧିକ ନାଚ ଆରମ୍ଭ କରି ଦିଅନ୍ତି ।

ସୋନେତ୍‌କା କିନ୍ତୁ ସମ୍ପୂର୍ଣ୍ଣ ଭିନ୍ନ ଧରଣର । ତାର ରୁଚି, ଚଟ୍‌କି ଯା-ତା ନେବ ନାହିଁ ବରଞ୍ଚ କୁହାଯାଇ ପାରେ ତା ପାଖରେ କାମନା ହେଉଛି ହୃଦୟଦହନ, ଆତ୍ମତ୍ୟାଗ ।

କିନ୍ତୁ ତିୟୋନା ଥିଲା ଖାଣ୍ଟି, ନିର୍ଭେଜାଲ ରୁଶ ସରଳତାର ନିର୍ଯ୍ୟାସ ।

ଏଇ ଦୁଇ ପ୍ରକାର ରମଣୀଙ୍କ ସହ ମସ୍କୋ ଠାରୁ ଆଗତ କଏଦୀ ଦଳ ଯେତେବେଳେ ସେରଗେଇ—କାତେସ୍କିନାଙ୍କ ଦଳ ସହିତ ମିଳିତ ହେଲ ସେତେବେଳେ ଏ ଦୁଇଟି ରମଣୀ ସାଙ୍ଗରେ ଆଣିଥିଲେ କାତେସ୍କିନା ପାଇଁ ମରଣାନ୍ତକ ଯନ୍ତଣା ।

ଦୁଇଦଳ ମିଳିତ ହେଲପରେ ନିଜ୍‌ନି ଠାରୁ କାଜାନ୍ ଯିବାର ପ୍ରଥମ ଦିନଠାରୁ ସେରଗେଇ କୌଣସି ପ୍ରକାରେ ସିପେହୀ ବନ୍ଧୁ ସ୍ତ୍ରୀ ତିୟୋନାର ପ୍ରଣୟ ଫାଶରେ ପଡ଼ିବାକୁ ଲଳାୟିତ ହୋଇ ପଡ଼ିଛି । ତିୟୋନା ଦି ସେରଗେଇକୁ ଅଯଥା ହତାଶାରେ ମନ ମାରିବାକୁ ଦେଇନାହିଁ । ତୃତୀୟ କିମ୍ବା ଚତୁର୍ଥ ରାତ୍ରୀର ଆଶ୍ରୟ-ସ୍ଥଳରେ ସଂଧ୍ୟା ସମୟରେ କାତେସ୍କିନା ସେରଗେଇ ସହ ଭେଟିବାକୁ ବ୍ୟବସ୍ଥା କରିଥିଲ । ସେ ନିଦ୍ରାହୀନ ଆଖିରେ ଅପେକ୍ଷା କରିଥିଲ, କୌଣସି ମୁହୂର୍ତ୍ତରେ ପ୍ରହରୀଟି ଆସି ଇଙ୍ଗିତ ଦେବ ।

କରିଡରରେ ଗୋଟିଏ ମାତ୍ର ମହମବତୀ ଜଳୁଛି । କାତେସ୍କିନା ଚାଲିଗଲ ସେଇଆଡ଼େ । ପୁରୁଷଙ୍କ ଓ୍ୱାର୍ଡ଼ ଡେଇଁଲ ବେଳେ କାତେସ୍କିନା ଶୁଣିବାକୁ ପାଇଲ କାହାର ଚାପାହସ ଶବ୍ଦ ।

ପହାରାଦାର ବିଡ୍ ବିଡ୍ କରି କହିଲ—ହସାହସିର ରକମଟା ଦେଖୁନ୍ତ ? କାତେସ୍କିନା ସେଇ ଅସଷ୍ଟ ଅନ୍ଧାର ଭିତରେ ମାଡ଼ିଗଲ ସେ ଦୁଇଜଣଙ୍କ ଆଡ଼କୁ । ଗୋଟେ ହାତ କର୍କଶ ଦାଢ଼ି ଉପରେ । ଆର ହାତଟା ସ୍ପର୍ଶ କଲ କୌଣସି ଏକ ରମଣୀର ଗରମ ମୁହଁ ଉପରେ ।

ସେରଗେଇ ଧୀର ଗଳାରେ ପଚାରିଲ—କିଏ ?

କଣ ହେଉଛି···ଆଁ ତୁମ ସହିତ ଏ କିଏ ?

ଅନ୍ଧାରରେ କାତେସ୍କିନା ସଜୋରେ ତାର ସପତ୍ନୀର ମୁଣ୍ଡ ବନ୍ଧ ରୁମାଲଟାକୁ ଛିଣ୍ଡେଇ ଆଣିଲ । ଆଉ ସେତିକିବେଳେ ସେ ଦୌଡ଼ି ପଳେଇଗଲ ଆଉ ସେଥି ସହିତ ପୁରୁଷ ଓ୍ୱାର୍ଡ଼ରୁ ଉଛୁଳି ପଡ଼ିଲ ଶହେ ଅଟ୍ଟହାସ୍ୟ !

କାତେଶ୍ୱିନା ଫିସ୍‌ଫିସ୍ କଣ୍ଠରେ କହିଲା—ବଦମାସ୍ ଆଉ ସେରଗେଇର ନୂଆ ନାଗବ୍ଦୀ ମୁଣ୍ଡରୁ ଛଡ଼େଇ ରଖିଥିବା ରୁମାଲରେ ତା ମୁହଁକୁ ଜୋରରେ ପିଟିଦେଇ ଦୌଡ଼ିବାକୁ ଲଗିଲା । ସେରଗେଇ ତାକୁ ଅଟକେଇବାକୁ ଚାହିଁଲେ ବି ପାରିଲାନି ।

କାତେଶ୍ୱିନା ସେଇଦିନ ଗତିସାରା ନଶୋଇ ଚୁପଚାପ୍ ପଡ଼ି ରହିଲା । ସେ ଚାହିଁଥିଲା ନିଜକୁ କହିବାକୁ—ମୁଁ ତାକୁ ଆଉ ଭଲପାଏ ନାହିଁ !

ପୋଏଟରୁ ସିପାହୀ ସ୍ତ୍ରୀ ତିଆନୋ ତାକୁ ଉଠେଇ କହିଲା—ତୁମେ ଅନ୍ତତଃ ମୋ ରୁମାଲ ଖଣ୍ଡକ ଫେରେଇ ଦେଇ ପାର ।

ଓ ! ତୁମେ ଥିଲ ସେଇ ?

ସୁନାଟା, ଦିଅନା ଫେରେଇ ।

କିନ୍ତୁ ତୁମେ ଆମ ଦି ଜଣଙ୍କ ମଝିକୁ ଆସୁଛ କାହିଁକି ?

କାହିଁକି, ମୁଁ କଣ କଲିକି ? ତୁମେ ଭାବୁଛ ଆମ ଭିତରେ ଗଭୀର ପ୍ରେମ ପ୍ରେମ, ନା କଣ ? ସତରେ ଏମିତି କିଛି ସତ ମାରାତ୍ମକ ଘଟଣା ଘଟେ, ଯିଏ ଯାହା ପାଇଁ ମରି ଯାଆନ୍ତି—

କାତେଶ୍ୱିନା ଟିକିଏ ଚିନ୍ତା କରି ତକିଆ ତଳୁ ଛଡ଼େଇ ଆଣିଥିବା ରୁମାଲଟାକୁ ବାହାର କରି ତିଆନୋ ଆଡ଼କୁ ଫିଙ୍ଗିଦେଇ କରମୋଡ଼ି ଦେଲା ।

ଏଇନେ ତା ଛାତି ଭିତରଟା ଟିକେ ହାଲୁକା ହେଇଗଲା ।

ନିଜ ମନକୁ ମନ କହିଲା—ଛିଃ ! ମୁଁ କି ଏଇ ରଙ୍ଗବୋଳା ପିପାଟାକୁ ହିଂସା କରିବି ? ଚୂଲିକୁ ଯାଉ ସେଟା । ତା ସହିତ ନିଜକୁ ତୁଳନା କରିବାକୁ ଘୃଣା ଲାଗୁଛି ।

ପରଦିନ ରାସ୍ତାରେ ଯାଉ ଯାଉ ସେରଗେଇ ତାକୁ କହିଲା, ଶୁଣ···ତୁମକୁ ମୁଁ କହିବାକୁ ଚାହେଁ । ଦୟାକରି ତୁମେ ତୁମ ମୁଣ୍ଡ ଭିତରେ ଏଇ କଥାଟାକୁ ଭଲକରି ବିଚାର କର, ପ୍ରଥମତଃ ମୁଁ ତୁମର ଜିନୋଭିଇ ବରିସିଚ ନୁହଁ, ଦ୍ୱିତୀୟତଃ ତୁମେ ଏଇନେ ଆଉ କଉ ସୌଦାଗରର ସ୍ତ୍ରୀ ନୁହଁ ସୁତରାଂ ଦୟାକରି ଏଣିକି ଆଉ ବଡ଼ଲୋକୀ ଚାଲ ମାରିବାକୁ ଇଚ୍ଛା କରିବନି । ମୋ କାମରେ ଏତେଟିକେ ମାଇ ମଇଛି ଭଳି ଯେତେବେଳେ ସେତେବେଳେ ଟୁଁ ମାରିଲେ ସେଟା ମୁଁ ବରଦାସ୍ତ କରିବିନି ।

ଏହାର ଉତ୍ତରରେ କାତେଶ୍ୱିନା କିଛି କହିଲା ନାହିଁ ଏବଂ ତାପରେ ଗୋଟେ ସପ୍ତାହ ଧରି ସେ ସେରଗେଇ ପାଖକୁ ପାଖ ଚାଲିଲେ ବି ଉଭୟଙ୍କ ଭିତରେ ଗୋଟେ ଚାହାଣୀ କି ପଦେ କଥା ହେଇ ନାହିଁ ।

ସେରଗେଇ ପ୍ରତି କାତେଶ୍ୱିନାର ରାଗ ସୁବିଧା ଦେଲା । କୁନ୍ଦଧବଳା ତନୁଶ୍ରୀ ସୋନେଚ୍‌କା ସହିତ ମିଶିବା ପାଇଁ ଆୟୋଜନ କରି ସାରିଥାଏ ସେରଗେଇ । କେତେବେଳେ ଅଭିବାଦନ, କେତେବେଳେ ହାତରେ ଅଳ୍ପ ଗପ···ଏସବୁ କାତେଶ୍ୱିନାକୁ ଅଛପା ନଥିଲା । ଦେଖିଲା ପରଠୁ ତା ଛାତି ଭିତରଟା ଆହୁରି ସିଦ୍ଧ ହେବାକୁ ଲାଗିଲା ।

ତାକୁ ତା' ଆତ୍ମସମ୍ମାନ ବାରଂବାର ଆଘାତ ଦେଲା ।

ଦିନେ ତିଆନୋ ଆସି କାତେଶ୍ୱିନାକୁ କହିଲା, ତୁମେ ମୋତେ ନେଇ ନାଲିଶ୍ କରିଥିଲ ନା ? ମୁଁ ତ ତୁମର କିଛି କ୍ଷତି କରିନି । ଆମ ଭିତରେ ଉଡ଼ନ୍ତା ବାଦଲ ଭଳି ସଂପର୍କଟା ଥିଲା ହେଲେ ହୁସିଆର, ସୋନେଚ୍‌କା ଉପରେ ନଜର ରଖ— ।

କାତେଶ୍ୱିନା ମନସ୍ଥିର କରି ଆପଣା ମନକୁ କହିଲା, ନର୍କକୁ ଯାଉ ଏଇ ଆତ୍ମ ସମ୍ମାନ, ଆଜି ମୁଁ ତାର ଫଇସଲା କରିବି ।

ଏହାପରେ ଚିନ୍ତା ଭିତରେ ବୁଡ଼ି ରହିଲା, କଣ କଲେ ଫଇସଲାଟା ସବୁଠାରୁ ଭଲ ବାଟରେ ହେବ ।

ପର ଆଶ୍ରୟଠି ପହଞ୍ଚିବା ମାତ୍ରେ କାତେଶ୍ୱିନାକୁ ଡାକି ସେରଗେଇ କହିଲା —ଆଜି ରାତିରେ ଗୋଟେ ମିନିଟ୍ ପାଇଁ ଆସ···କଥା ଅଛି ।

କାତେଶ୍ୱିନା ଚୁପ୍ ରହିଲା ।

କଣ ହେଲା ? ମୋ ଉପରେ ଏଯାଏଁ ରାଗିଛ ନା କଣ ? କଥା କହୁନ ? କାତେଶ୍ୱିନା ଏଥର ବି କଥା କହିଲାନି ।

କିନ୍ତୁ ପର ଘାଟୀ ଆସିବା ପରେ କେବଳ ସେରଗେଇ ନୁହଁ, ଅନ୍ୟ ସମସ୍ତେ ଲକ୍ଷ୍ୟ କରିଛନ୍ତି ଯେ, କାତେଶ୍ୱିନା ସର୍ଦ୍ଦାର ପାହାରଦାର ଚାରିପଟେ ଘୂରଘୂରି କରୁଥିବାର । ଦିନେ ଭିକ୍ଷାକରି ପାଇଥିବା ସତରଟି କପେକ୍‌କୁ ସର୍ଦ୍ଦାର

ହାତରେ ଗୁଞ୍ଜିଦେଲ ଓ ମିନତିଭରା କଣ୍ଠରେ କହିଲ—ଆଉ ଦଶଟା ଜମାଇ ପାରିଲେ ତୁମକୁ ଦେବି ।

ଏସବୁ ଦେଖି ସେରଗେଇ ଖୁସୀ ହେଇ ସୋନେଚ୍କା ଆଡ଼କୁ ଗୋଟେ ଇଶାରା ମାରି ଦୌଡ଼ିଗଲ କାତେରୀନା ଆଡ଼କୁ । ତାକୁ କୁଣ୍ଢେଇ ପକେଇ ସମସ୍ତଙ୍କୁ ଶୁଣାଇଲ ଭଳି କହିଲ—ଶୁଣନ୍ତୁ, ଯାଙ୍କ ସହିତ ତୁଳନା କଲଭଳି ଏମିତି ଗୋଟେ ନାରୀ ଦୁନିଆରେ ଏପରିକି ସାରା ସଂସାରରେ ମିଳିବ ନାହିଁ ।

କାତେରୀନାର ମୁହଁ ନାଲି ହେଇଗଲ—ଖୁସିରେ ବି ସେ ହାମି ଉଠିଲ । ସଂଧ୍ୟା ହେଲକ୍ଷଣି ନିଃଶବ୍ଦରେ ଦରଜା ଖୋଲିଗଲ, ଆଉ ଛୁଟିଗଲ ସେରଗେଇ କଉଠି ଅଛି, ଖୋଜିବାକୁ ଲଗିଲ ।

ତାକୁ ପାଇଲ ପରେ କୁଣ୍ଢେଇ ପକେଇ କହିଲ—ମୋ ପ୍ରିୟ— !

ପହରାଦାରମାନେ ଏପଟ ସେପଟ ବୁଲୁଥିଲ ବେଳେ କିଏ ଛିଡ଼ା ହେଇ ପଡ଼ୁଛନ୍ତି, କିଏ ବି କାହା ଘରର କବାଟ ଫାଙ୍କରେ ଅନେଇ ମୂଷାଙ୍କ କମ୍ବଳ କୁଟୁକୁଟୁ କରୁଥିବା ଚିତ୍ର ଦେଖୁଥିଲେ—ଆଉ ସେତେବେଳେ କାତେରୀନା ସପ୍ତମ ସ୍ୱର୍ଗରେ ଥିଲ ।

ଅବଶେଷରେ ସେରଗେଇ ନାଲିଶ କଲ—ମୁଁ ଯେ ମାରାତ୍ମକ ଯନ୍ତ୍ରଣାରେ କଷ୍ଟ ପାଉଛି, ଦେହର ହାଡ଼ତକ ଯନ୍ତ୍ରଣାରେ ଖଣ୍ଡ ଖଣ୍ଡ ହେଇ ଗଲାଣି ।

ସେରଗେଇର ଲମ୍ବା କୋଟ୍ ଭିତରେ ମୁଣ୍ଡ ଗୁଞ୍ଜିଦେଇ କାତେରୀନା କହିଲ—ତା' ହେଲେ କଣ କରାଯିବ, କୁହ ?

କାଜାନରେ ପହଞ୍ଚିଲ ପରେ ମୋତେ ସେଠା ହସପିଟାଲରେ ଜାଗାଟିଏ କରିଦେବାକୁ—।

ଏମିତି କଣ କହୁଛ ?

ଏହାଛଡ଼ା ମୋର ଆଉ ଅନ୍ୟ ଗତି ନାହିଁ, ଯନ୍ତ୍ରଣାରେ ମୋ ପ୍ରାଣ ଛଟପଟ ହେଉଛି ।

କିନ୍ତୁ ତାହେଲେ ସେମାନେ ମୋତେ ଆଗକୁ ଖୋଜି ନେବେ...ଆଉ ତୁମେ ପଡ଼ି ରହିବ ପଛେ ପଛେ—।

କିନ୍ତୁ ମୁଁ କଣ କରିବି...ମୋର ଯାହା କହିବାର କହିଦେଲି...ମୋ ଗୋଡ଼ରୁ ମାଂସ ଛିଣ୍ଡି ପଲାଣି...ଅନ୍ତତଃ ମୋଜାଟିଏ ହେଲେ ଚଳନ୍ତା—।

ଲମ୍ବା ମୋଜା ? ମୋ ପାଖରେ ହଳେ ଅଛି...।

ହଉ ଚଳିଯିବ ତା' ହେଲେ—।

ସଙ୍ଗେ ସଙ୍ଗେ ଛୁଟିଗଲା । ଶୋଇବା ଜାଗାରୁ ତା ବ୍ୟାଗଟାକୁ ଖୋଲି ବାହାର କଲା । ସେଥିରୁ ବାହାର କଲା ନୀଳରଙ୍ଗର ଗୋଟେ ଲମ୍ବା ମୋଜା ଓ ତାକୁ ଧରି ପୁଣି ଦୌଡ଼ିଲା ।

କାତେଷ୍ୱିନା ଶେଷରେ ସେଇ ମୋଜା ହଳଟିକୁ ସେରଗେଇକୁ ଦେଇ କହିଲା—ଏଥର ତୁମର ଆଉ ଚିନ୍ତା କଣ !

କାତେଷ୍ୱିନାର କି ଆନନ୍ଦ ! ମୋଜାର ଦୁଇ ପାଖରେ ମିହି ନକ୍ସା ଜଳ-ଜଳ ଦିଶୁଛି । ବଲ୍‌କପ୍ ସହର ତିଆରି ମୋଜା, ଏ ମୋଜା ତିଆରି କରେଇ, ସହର ତମାମ୍ ନାମଧ୍ୟ ଖ୍ୟାତି ସେ ପାଇଥିଲା ।

ଫେରିଆସି ଅଘୋର ନିଦରେ ଶୋଇ ପଡ଼ିଲା । ଶୁଣି ପାରିଲାନି, ସୋନେଚ୍‌କା କିମିତି ଚୁପିଚୁପି ସେରଗେଇ ପାଖକୁ ଯାଇଥିଲା, ସେଠୁ କେତେ-ବେଳେ ଫେରି ବି ଆସିଛି ।

ଏ ସମସ୍ତ ଘଟିଗଲା ଜାହାଜ ପହଞ୍ଚିବାର ଦୁଇଟି ଘଣ୍ଟା ପୂର୍ବରୁ ।

ଘାଟୀର ବନ୍ଦ ଖୁମ୍‌ସୁମ୍ ଘର ଭିତରୁ ବାହାରିଲା ମାତ୍ରେ କଏଦୀ ମାନଙ୍କୁ ରୁଦ୍ର ଅଭ୍ୟର୍ଥନା ଜଣାଇଲା ଶୀତ ଜର୍ଜର ମିଶା ବର୍ଷା ଆଉ ବରଫର ଅକରୁଣ ଦିନ ।

କାତେଷ୍ୱିନା ଛାତିରେ ଅଦମ୍ୟ ସାହସ ବାନ୍ଧି ଆଗେଇଲା । କିନ୍ତୁ ଦେହ ସାରା ଅସମ୍ଭବ ଯନ୍ତ୍ରଣା, ମୁହଁଟି ସବୁଜ ରଙ୍ଗରେ ପରିବର୍ତ୍ତିତ ହୋଇ ସାରିଥିଲା । ତା ଆଖି ଆଗରେ ବିଶ୍ୱସଂସାର ଅନ୍ଧାର ଦିଶିଲା ।

ସୋନେତ୍ ଦେମାକ ଦେଖେଇ ତା ଆଗରେ ଚାଲୁଥିଲା । ପାଦରେ ତାର ନୀଳ ପଶମର ମୋଜା—କାତେରୀନାକୁ ଚିହ୍ନିବାକୁ ଭୁଲ ହେଲ ନାହିଁ ।

ସେ ଆଗେଇ ଚାଲୁଥିଲ । ଦେହରେ ତିଳେମାତ୍ର ଜୀବନ ନଥିଲା ଭଳି ଲାଗୁଥିଲ । କେବଳ ତା ଆଖି ଦୁଇଟି ପୂର୍ଣ୍ଣ ଜୀବନ୍ତ ଥିଲ । ସେଇ ଆଖିରେ ଅନେଇଥିଲ ସେରଗେଇ ଆଡ଼କୁ—ଅପଲକ ଥିଲ ତାର ଆଖି ଦୁଇଟି ।

ଯେତେବେଳେ ସେରଗେଇ ପାଖାପାଖି ହେଇଗଲା, କେବଳ ପଦେ କହିଲ—ପିଶାଚ ! ଆଉ ତା ମୁହଁକୁ ଛେପ ଥୁ ଥୁ କରିଦେଲ ।

ସେରଗେଇ ତା ଉପରକୁ ଝାମ୍ପି ପଡ଼ିବାକୁ ଯାଉଥିଲବେଳେ ସାଙ୍ଗ କଏଦୀମାନେ ତାକୁ ଓଟାରି ଧରି ପକେଇଲେ । ସେରଗେଇ ହାତରେ ଛେପ ପୋଛି ପକେଇ କହିଲ—ଛିଡ଼ା ହ, ଦେଖେଇ ଦେବି ।

ଆଉ ଅନ୍ୟମାନେ ବ୍ୟଙ୍ଗକରି କହିଲେ—ଏତେ ରୁଆବ୍ କାହିଁକି, ସେ ତୁମ ସହିତ ମୁକାବିଲ କରିବାକୁ ଡରୁନାହିଁତ !

ଆଉ ସମସ୍ତଙ୍କ ଥଟ୍ଟାତାମସା ମଝିରେ ସୋନେତ୍କାର ହସଟା ତୀବ୍ରତର କରିଦେଲ ।

ସୋନେତ୍କା ସାହାଯ୍ୟରେ ଗୋଟା ଷଡ଼ଯନ୍ତ୍ରଟା ଗଢ଼ି ଉଠିଥିଲା ବୋଲି ଜଣାପଡ଼ିଗଲା । ଜଳଝଡ଼ ଭିତରେ ଦୀର୍ଘରାସ୍ତା ଅତିକ୍ରମ କରି କ୍ଲାନ୍ତ ଅବସନ୍ନ, ଛିନ୍ନଭିନ୍ନ ହୃଦୟ ନେଇ କାତେରୀନା ଟେର ପାଇଲା ନାହିଁ କେତେବେଳେ ଦୁଇଟି କଏଦୀ ନାରୀ କଏଦୀ ଓ୍ୱାର୍ଡ଼ ଭିତରକୁ ପଶିଗଲେ ।

ସେମାନେ ପଶିଲାକ୍ଷଣି ସୋନେତ୍କା ନୀରବରେ ତାଙ୍କୁ ଇସାରା କରି କମ୍ବଳ ଢାଙ୍କି ଶୋଇପଡ଼ିଲ ଆଉ ସେ ଦୁଇଜଣ କାତେରୀନାର ଖସଖସିଆ ସେମିଜ୍ କାଢ଼ି ବେଧଡ଼କ୍ ପ୍ରହାର ଆରମ୍ଭ କରିଦେଲେ ।

କାତେରୀନା ଚିତ୍କାର କରିବାକୁ ଚାହିଁଲା କିନ୍ତୁ ଏତେ ଦୁର୍ବଳ ହେଇ ଯାଇଥିବାରୁ ତା ମୁହଁରୁ କିଛି ବାହାରିଲା ନାହିଁ । ସେ ନିଜକୁ ମୁକ୍ତ କରିବାକୁ ଚେଷ୍ଟାକଲା, ପାରିଲାନି । କଏଦୀ ଦି ଜଣ ତା ହାତକୁ ଶକ୍ତ ଭାବରେ ମୁଠାଇ ଧରିଥିଲେ ।

ପର୍ଦ୍ଦା ! ଗଣିବା ପରେ ଗଣାଶେଷ ହେଲା । କାହାର ବୁଝିବାକୁ ଅସୁବିଧା ନଥିଲା, ଏଟା ସେରଗେଇର ଗଳା । ଦୁଇ ନିଶାଚର ଦରଜା ବାଟେ ଅନ୍ତର୍ଦ୍ଧାନ ହେଇଗଲେ ।

କାତେରୀନା କୋଟ ଭିତରୁ ମୁହଁ ବାହାର କରି ଛିଡ଼ାହେଲା । ସେଠାରେ କେହି ନଥିଲେ । ଅଦୂରରେ କମ୍ବଳ ତଳେ କିଏ ଯେମିତି ହସୁଥିଲା । କାତେରୀନା ସୋନେତ୍‌କାକୁ ଚିହ୍ନିପାରିଲା । ଏଇ ଅସମ୍ମାନ ସମସ୍ତ ସୀମା ଟପି ସାରିଥିଲା । ଏଇ ସୀମାହୀନ ଯନ୍ତ୍ରଣା ସେବେଠାରୁ କାତେରୀନାକୁ ଯେମିତି ବିଦ୍ଧକରି ଚାଲିଲା । ମତିଭ୍ରଷ୍ଟ ପାଗଳ ଭଳି ସେ ଢଳିପଡ଼ିଲା ତିୟୋନ ଛାତି ଉପରେ ଓ କାନ୍ଦି କାନ୍ଦି ପୂରା ଗଡ଼ିଗଲା ତା ଛାତି ଉପରେ ।

ବର୍ତ୍ତମାନ ଦୁହେଁ ଗୋଟିଏ ନାଆର । ସତ କହିଲେ, ତାଙ୍କ ପାଖରେ ଅପମାନଟା ଆଉ ଅପମାନ ଭଳି ନଥିଲା । କାତେରୀନା ଏଥର ନିଜକୁ ଶକ୍ତ କରିନେଲା, ସତେ ସେ ପଥର ଭଳି ହେଇଗଲା । ଏଥର ଗୋଲ ନମ୍ବର ଡକା ପାଳି ପଡ଼ିଗଲା । ଡ୍ରମ ବାଜିବାକୁ ଲାଗିଲା, ଦ୍ରମ୍...ଦ୍ରମାଦ୍ରମ୍...ଦ୍ରମାଦ୍ରମ୍...ଦ୍ରମ୍ । ଜଞ୍ଜିର ବନ୍ଧା, ଜଞ୍ଜିର ନଥିବା ଉଭୟ ଶ୍ରେଣୀର ନିରାନନ୍ଦ ନିଷ୍ପ୍ରଭ କଏଦୀ ଦଳ ଯେମିତି ଅଦୃଶ୍ୟ ହାତର ଧକ୍‌କା ଖାଇ ଖାଇ ଘାଟୀର ଚଟାଣ ଉପରେ ବାହାରି ଯାଉଥିଲେ । ସେରଗେଇ ଅଛି ସେଇଠି, ଆଉ ଅଛି ତିୟୋନା, ସୋନେତ୍‌କା, କାତେରୀନା—ଅଛନ୍ତି ପ୍ରଚଳିତ ଧର୍ମ ବିରୁଦ୍ଧରେ ବିଦ୍ରୋହ କରି ଦଣ୍ଡିତ ଆଦର୍ଶବାଦୀ ଜଣେ କଏଦୀ—ଇହୁଦୀଟିଏ, ଜଞ୍ଜିରରେ ଦେହସାରା ଆବୃତ ।

ପ୍ରଥମେ ଦଳବାନ୍ଧି ଛିଡ଼ାହେଇଥିଲେ, ପରେ ଧାଡ଼ିବାନ୍ଧି ଚାଲିବାକୁ ଲାଗିଲେ । ଏ ପ୍ରକାର ନିରାନନ୍ଦ ଦୃଶ୍ୟ ଖୁବ୍ ବିରଳ, ପାଞ୍ଚଜଣଙ୍କ ଜଗତ ଠାରୁ ଭିନ୍ନ, ଉଜ୍ଜ୍ୱଳତର ଭବିଷ୍ୟତ ସମ୍ବନ୍ଧରେ ହୃଦୟରେ ଯାହାଙ୍କର କଣାଏ ବି ଆଶାର ଛାଇଟି ପର୍ଯ୍ୟନ୍ତ ନାହିଁ—ଏମାନେ କେତେଜଣ ଲୋକ କଅଁା ରାସ୍ତାର ହିମଶୀତଳ କଳା କାଦୁଅ ଭିତରେ ପଶି ପଶି ଆଗେଇ ଚାଲିଛନ୍ତି । ସେମାନଙ୍କ ଚାରିପଟେ ସବୁଯେମିତି ବିସଦୃଶ ଆତଙ୍କରେ ମଣିଷର ଦେହ ଶିହରି ଉଠେ । ମୁଣ୍ଡ ଉପରେ ବିବର୍ଣ୍ଣ ଆକାଶ, ପତ୍ରବର୍ଜିତ ନଙ୍ଗଳା ଉଇଲୋ ଗଛ ଓ ତା ଉପରେ ବସିଥିବା ଡାମରା କୁଆ । ପବନ କେମିତି ଗୁମୁରି ଗୁମୁରି ଉଠୁଛି, ତା କଣ୍ଠସ୍ୱର କେତେବେଳେ କ୍ରୁଦ୍ଧ ପୁଣି କେତେବେଳେ ତୀବ୍ର କ୍ରନ୍ଦନର ରୋଳ—ପୁଣି କେତେବେଳେ ଭୀଷଣ ହୁଂକାର ।

ଏଇ ବୀଭତ୍ସ ଦୃଶ୍ୟ ଦୃଶ୍ୟର ପରିପୂର୍ଣ୍ଣତା ଆଣି ଦେଇଛି ନର୍କର ସେଇ ଗର୍ଜନ, ଯେଉଁ ଗର୍ଜନ ମଣିଷର ଆତ୍ମାକୁ ଛିନ୍ନ-ବିଛିନ୍ନ କରିଦିଏ । ସେ ଗର୍ଜନ ପ୍ରତିଧ୍ୱନିତ ହେଉଥିଲା ବାଇବେଲର ମହାପୁରୁଷ ଆୟୁବଙ୍କ ଅଭିସମ୍ପାତ—"ଧ୍ୱଂସ ହେଉ ସେହିଦିନ, ଯେଉଁଦିନ ମୁଁ ଜନ୍ମଗ୍ରହଣ କଲି !" ଆଉ ତାଙ୍କପତି ତାଙ୍କ ସ୍ତ୍ରୀର ଉପଦେଶ : "ତୁମ ଭଗବାନଙ୍କୁ ଅଭିଶାପ ଜଣାଇ ମରିଯାଅ !"

ଯେଉଁମାନେ ଏଇ ଉପଦେଶବାଣୀକୁ କର୍ଣ୍ଣପାତ କଲେ ନାହିଁ, ଏରକମ ବୀଭତ୍ସ ଅବସ୍ଥାରେ ଯାହାଙ୍କ ମନରେ ମୃତ୍ୟୁଚିନ୍ତା ପ୍ରଲୋଭନଠାରୁ ଭୟସୃଷ୍ଟି କରେ ବେଶି—ତାକୁ କରିବାକୁ ହୁଏ ବୀଭତ୍ସତର ଏମିତି କିଛି ଯେଉଁଟା ଏଇ ଆର୍ତ୍ତ କ୍ରନ୍ଦନ-ଧ୍ୱନିରେ ତଣ୍ଟି ଚିପି ତାକୁ ନୀରବ କରିଦେବ। ।

ଅଥଚ ସେ ଗ୍ରେଙ୍କ ସଙ୍ଗ, ନିଜକୁ ନେଇ ନିଷ୍ଠୁର ଖେଳ, ଅନ୍ୟ ପାଞ୍ଚଜଣ ମଣିଷକୁ ନେଇ—ତାଙ୍କର କୋମଳତମ ହୃଦୟାନୁଭୂତିକୁ ନେଇ । ଏମାନେ ଏମିତି ଅତ୍ୟଧିକ କୋମଳ ସ୍ୱଭାବ ହୋଇ ପାରନ୍ତିନି—ଏରକମ ଅବସ୍ଥାରେ ପଡ଼ି ହୋଇଯାନ୍ତି ଦ୍ୱିଗୁଣ ପିଶାଚ !

କାତେରିନା ଏଭଳି ମାରଧର ଖାଇଲା ପରଦିନ ଭୋରବେଳା ବନ୍ଦୀଙ୍କ ଯେତେବେଳେ ଗ୍ରାମ ଭିତରେ ଘାଟୀ ଛାଡ଼ି ପ୍ରଥମ ଗସ୍ତା ଆଡ଼କୁ ଗୋଡ଼ ବଢ଼ାଇଲେ ସେତେବେଳେ ସେରଗେଇ ଇତର କଣ୍ଠରେ କାତେରିନାକୁ ପଚାରିଲା—ଓ ଗୋ ! ମୋ ପାଟରାଣୀ ! ସୌଦାଗରର ଘରଣୀ ! ସମ୍ମାନିତା ମହାଶୟା ! ସମସ୍ତ ସୁସ୍ୱାସ୍ଥ୍ୟ ଉପଭୋଗ କରୁଛନ୍ତି ତ ?

କଥାକନି ସାରି ସୋନେଟ୍‌କା ଆଡ଼େ ଅନାଇଲା ଓ ସେଇ ପୁରୁଣା ଗୀତରୁ ପଦେ ଗାଇଉଠିଲା ; ସୁନେଲି ଚୁଳର କୋମଳ ମଥାଟି ଦେଖୁନି ଝରକା ବାଟେ/ କୁଗ୍ରହ ମୋର ଶୋଇନାହଁ ଟିକିଏ...ପୁଣି ଭାଙ୍ଗିବ ହିୟା ! । ଢାଙ୍କି ରଖି ମନର ଅବଗୁଣ୍ଠନେ—ପ୍ରିୟା !

ଗୀତଟାକୁ ଗାଇସାରି ସମସ୍ତଙ୍କ ସାମ୍ନାରେ ସୋନେଟ୍‌କାକୁ ଜାବୁଡ଼ି ଧରି ଚୁମ୍ବନ ଲୀଳା ଆରମ୍ଭ କରିଦେଲା ।

କାତେରିନା ଏସବୁ ଦେଖିଲା, ଅଥଚ ଯେମିତି ଦେଖିପାରୁ ନଥିଲା । ଏମିତି ଅବସ୍ଥାରେ ସେ ପାଲଟି ଯାଇଥିଲା ପ୍ରାଣହୀନ କଣ୍ଢେଇଟେ ପରି । ସତେ ସେ ଗୋଟେ ଅବହେଳିତ ବଳିଯୋଗ୍ୟ ପଶୁ !

କେବଳ ମଝିରେ ମଝିରେ ତିୟୋନା ତାକୁ ପଦେ ପଦେ କହେ—ଗୁଡ୍ ସେ କଥା···ପିଶାଚ କଉଠିକାର !

ଗୋଟେ ଟୋକା କଏଦୀ କହି ପକେଇଲା—ଦେଖିଲ ଦେଖିଲ ତା ପାଦ ଦୁଇଟି ଭିଜି ଗଲଣି ବୋଧେ— ।

ନିଜକୁ ଯଥା ସମ୍ଭବ ସମ୍ଭାଳି ନେଇ ଦମ୍ଦିଆ କଳ ଭଳି କାତେସ୍ତିନା ଆଗକୁ ପାଦ ପକେଇଲା ।

ଆବହାଓଆ କ୍ରମାଗତ ଖରାପ ଆଡ଼କୁ ଯାଉଥିଲା । ଏତେଦିନ ଧରି ଧୂସର ମେଘ ଆକାଶକୁ ଢାଙ୍କି ରଖିଥିଲା ଏଇନେ ସେଥିରୁ ଝରିବାକୁ ଆରମ୍ଭ କରିଦେଲା ବରଫ କଣା । ମାଟି ଛୁଇଁବା ମାତ୍ରେ ତରଳି ଯାଇ ଗଣ୍ଡାର କାଦୁଅକୁ କରି ଦେଉଛି ଆହୁରି ଗମ୍ଭୀର—ତା' ଭିତରେ ଚାଲିବାକୁ ଖୁବ୍ କଷ୍ଟ ହେଉଥିଲା ।

ଶେଷରେ ଗୋଟେ ଶିସାରଙ୍ଗର ରେଖା ଦେଖାଗଲା । ସେ ରେଖାର ଅନ୍ୟ ତୀର ଆଖିରେ ପଡ଼େ ନାହିଁ । ଏଇ ରେଖାଟି ଭଲ୍ଗା ନଦୀ । ଅଳ୍ପ ଅଳ୍ପ ଜୋରରେ ଭଲ୍ଗା ଉପରୁ ପବନ ବହୁଛି ଆଉ ଢେଉ ମୁଣ୍ଡ ପିଟୁଥିଲା ଏଠି ସେଠି ।

ସର୍ବାଙ୍ଗରେ ଭିଜା, ଶୀତରେ କମ୍ପି କମ୍ପି କଏଦୀ ଦଳ ଧୀରେ ଧୀରେ ଘାଟଠି ପହଞ୍ଚି ବିରାଟ ଗୋଟେ କାଠଭେଳାକୁ ଅପେକ୍ଷା କଲେ ।

କଳା ଭେଳାର କାଠରୁ ପାଣି ଝରୁଥିଲା । କୂଳରେ ଥିବା ପ୍ରହରୀମାନେ କଏଦୀମାନଙ୍କୁ ଉଠିବାକୁ ସାହାଯ୍ୟ କଲେ !

ଭେଳାଟି ଢେଉ ଉପରେ ଦୋଳି ଖେଳିବାକୁ ଆରମ୍ଭ କରିଦେଲା । ଭେଳା ଛାଡ଼ିଲାକ୍ଷଣି ଜଣେ କହି ପକେଇଲା—କିଏ କହୁଥିଲା, କାହା ପାଖରେ ବିକ୍ରୀ ପାଇଁ ଭଦ୍‌କା ଅଛି !

ସେରଗେଇ ଜବାବ୍ ଦେଲା—ସତରେ, ସାମାନ୍ୟ ଟୋପେ ହେଲେ ଗଳାନଳିଟା ଟିକିଏ ଓଦା ହେଇଯିବାର ଏଇ ସୁଯୋଗଟାକୁ ହରାଇବାକୁ ଖୁବ୍ ପରିତାପର ବିଷୟ !

ତାପରେ ସୋନେଟ୍‌କାର ଫୁର୍ତ୍ତି ପାଇଁ କାତେସ୍ତିନାକୁ ଥଟ୍ଟା ଆରମ୍ଭ କରିଦେଲା । କଣ କହୁଛନ୍ତି ସୌଦାଗରଣୀ ପାଟରାଣୀ ? ପୁରୁଣା ବନ୍ଧୁତ୍ୱ ଖାତିରରେ ଗୋଟେ ପେଗ୍ ଭେଦ୍‌କା ଦେଇ ଆମ ଚିତ୍ତବିନୋଦନ କଲେ, କିରକମ୍ ହୁଅନ୍ତା ? କୃପଣାମୀ କରିବନି, ମନେରଖ ପ୍ରିୟତମା ! ଆମ ପୁରୁଣା ପ୍ରେମ ଖାତିରରେ ।

ଶୀତରେ କାତେୱ୍ୱିନାର ସର୍ବାଙ୍ଗ ଥରଥରି କମ୍ପି ଉଠୁଥିଲା । ସେ ଶୀତ ତାର ଦର ଦର ଭିଜା ଓଦାଲୁଗା ଭେଦକରି ତା' ଅସ୍ଥି-ମଜ୍ଜା ପର୍ଯ୍ୟନ୍ତ ପଶିଯାଇଥିଲା···ଆଉ ଦେହ ଭିତରୁ ନିଆଁ ଟୁକୁଡ଼ାଟେ ଦାଉ ଦାଉ ଜଳୁଥିଲା···ତା' ଆଖିର ଡ଼ୋଳା ଦୁଇଟି ଅସ୍ୱାଭାବିକ ପ୍ରକାରରେ ବିସ୍ଫାରିତ ହେଇଯାଉଥିଲା···ତାର ଦୃଷ୍ଟି ଦୋଳାୟମାନ ଢେଉ ପରେ ନିଷ୍ପଳ ଆଉ ନିବଦ୍ଧ ହେଇଗଲା ।

ସୋନେଚ୍‌କାର ସ୍ୱରରେ ଗୋଟେ ରୂପାଘଣ୍ଟା ଝଣଝଣ ଭଳି ଶୁଭିଲା—ସତରେ ଗୋଟେ ଫୁଣ୍ଟା ଭଦ୍‌କା ପାଇଲେ ମୁଁ ବଞ୍ଚି ଯାଆନ୍ତି···ଏଇ ଶୀତଟାକୁ ମୁଁ ଜମ୍ମା ସହି ପାରୁନି !

ସେରଗେଇ କ୍ରମାଗତ ଖେଞ୍ଚି ଖେଞ୍ଚି କଥା କହିଚାଲିଛି—ଆସନ୍ତୁ ନା, ଆମ ସୌଦାଗର ବେଗମ୍···ଆମକୁ ଟିକେ ଖାଇବାକୁ ଦିଅନ୍ତୁ ।

ଭର୍ତ୍ସନାଭରା କଣ୍ଠରେ ତିୟୋନା କହିଲା—ଛିଃ···ବିବେକ ବୋଲି କିଛି ନାହିଁ !

ସେରଗେଇ ତିୟୋନା ଆଡ଼କୁ ହୁଂକାର ଦେଲା—ତୁ ଦୋଚାରଣୀ···ତୁ ଆଉ ତୋ' ବିବେକ ! ତୁ କଣ ଭାବିଛୁ ତା ପାଇଁ ମୋର ବିବେକ ଛଟପଟ ହେବ !

···ବରଂ ଯଦି ଆମ ଦଳର ବଡ଼ଅଫିସର ସାଙ୍ଗରେ ପୀରତି କଲେ ଅନ୍ତତଃ ଦେହ ହାତ ବର୍ଷାରେ ଭିଜନ୍ତା ନାହିଁ !

ଆଉଥରେ ସୋନେଚ୍‌କାର ଗଳା ଘଣ୍ଟାଭଳି ଝଣଝଣ ହେଲା—ଆଉ ତେବେଠାରୁ ସମସ୍ତେ ତାକୁ ଅଫିସରର ବୀବୀ ବୋଲି ଡାକିବା !

ସେରଗେଇ ଯୋଗକଲା—ଏକଦମ୍ ଖାଣ୍ଟି କଥା···ଆଉ ହଲେ ମୋଜା ପାଇଁ ତାଠୁ ପଇସା ଯୋଗାଡ଼ କରିବାଟା ହେବ ପିଲାଖେଳା ପରି !

କାତେୱ୍ୱିନା ଆତ୍ମପକ୍ଷ ସମର୍ଥନ କଲା ନାହିଁ । ସେ ଆହୁରି ସ୍ଥିର ଅବିଚଳ ଦୃଷ୍ଟିରେ ଅନେଇ ରହିଲା ଢେଉ ଗୁଡ଼ିକ ଆଡ଼େ, କେବଳ ଓଠ ଦୁଇଟା ଥରି ଉଠିଲା ।

ହଠାତ୍ ଗୋଟେ ଢେଉ ବିଗଟ ହାଇ ଭଳି ଉଚ୍ଛୁଳି ପଡ଼ିବା ସମୟରେ କାତେୱ୍ୱିନା ଲକ୍ଷ୍ୟ କରିଛି ବରିସ୍ ତିମୋତେଇଭିଚ୍‌ର ବିବର୍ଣ୍ଣ ମୁହଁ···ପୁଣି ତା ସ୍ୱାମୀ···ତା ପରେ ଫେଦିଆର ମୁହଁ ଝଲସି ଉଠିଲା ।

କାତେଶ୍ୱିନା ଈଶ୍ୱରଙ୍କ ଉଦ୍ଦେଶ୍ୟରେ କୌଣସି ପ୍ରାର୍ଥନାକୁ ସ୍ମରଣ କଲା କିନ୍ତୁ କ୍ଷୀଣ ସ୍ୱରରେ ବାହାରି ପଡ଼ିଲା—ତୁମଆମ ଦୁଇଜଣଙ୍କ ଭିତରେ କେତେଠାରୁ ଆମତୁମ ଭଳି ମଣିଷକୁ ପଠାଯାଉଛି ନିଷ୍ଠୁର ମୃତ୍ୟୁ ଭିତରରେ ।

କାତେଶ୍ୱିନା କମ୍ପି ଉଠିଲା । ତାର ଦୃଷ୍ଟି ଏପାଖ ସେପାଖ ଆଉ ନହୋଇ ଗୋଟିଏ ବିନ୍ଦୁରେ ସ୍ଥୀମିତ ରହିଗଲା । ସେ ଦୃଷ୍ଟି ପାଗଳିନୀ ଭଳି । ଥରେ ଦିଥର ତାର ହାତ ମହାଶୂନ୍ୟ ଆଡ଼େ ଉଦ୍ଦେଶ୍ୟହୀନ ଭାବେ ଉଠି ପୁଣି ପଡ଼ି ରହିଲା ।

କିଛି ସମୟ ପରେ ହଠାତ୍ ତା ଦେହ ଦୋଳି ଭଳି ଝୁଲିବାକୁ ଲାଗିଲା । ତା ଆଖି ଗୋଟେ କଳା ଢେଉ ଭିତରେ ନିବଦ୍ଧ ହେଇଗଲା···ଆଉ ଗୋଟେ ଝଟକା ଭିତରେ ଟଳି ପଡ଼ିଲା ସୋନେତ୍‌କା ପାଦ ପାଖାପାଖି···ସେଥି ସହିତ ଭେଳାରୁ ଖସି ପଡ଼ିଲେ ଭଲ୍‌ଗାର ଗ୍ଲୁଟି ଭିତରକୁ ।

ବିସ୍ମୟରେ ସମସ୍ତେ ପଥର ପାଲଟି ଗଲେ ।

ଗୋଟେ ଢେଉ ଉପରକୁ କାତେଶ୍ୱିନାକୁ ଉଠେଇ ପୁଣି ଗ୍ରପି ଦେଲା । ଆଉ ଢେଉରେ ସୋନେତ୍‌କାକୁ ଉଠେଇ ଦେଲା ।

ସମସ୍ୱରରେ ଚିତ୍କାର ଶୁଭିଲା—ନୌକା ଆଙ୍କୁଶିଟା ପକେଇ ଦିଅ ।

ନୌକାର ଆଙ୍କୁଶିଟା ଶୂନ୍ୟରେ କେତେଥର ଘୁରିଲା ପରେ ଖପ୍‌କି ପାଣିରେ ପଡ଼ିଲା । ସେତେବେଳକୁ ସୋନେତ୍‌କା ପାଣି ଭିତରେ ଅଦୃଶ୍ୟ ହେଇସାରିଥିଲା ।

ପୁଣି ଥରେ ସୋନେତ୍‌କା ଉପରକୁ ଦି'ସେକେଣ୍ଡ ପାଇଁ ଉଠିଥିଲା କିନ୍ତୁ ସଙ୍ଗେ ସଙ୍ଗେ କାତେଶ୍ୱିନା ତାକୁ ଝାମ୍ପି ଧରିଲା—ପ୍ରବଳ ବର୍ଷା ଯେଉଁଭଳି ଗ୍ଲେଟ ଗ୍ଲେଟ ମତ୍ସ୍ୟଶାବକଙ୍କୁ କ୍ଷୀଣ ଉପେକ୍ଷା କରେ ।

ଦୁଇଜଣରୁ କେହି ଆଉ ଉପରକୁ ଉଠିଲେ ନାହିଁ ।



# ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

❊ କେତେଯେ ଅହଲ୍ୟା (ଉପନ୍ୟାସ)

❊ କଲମ୍ବସର ଜାହାଜ (ଗଳ୍ପ)

❊ ଘୋଡ଼ା ପିଠିରୁ ଖସିପଡ଼ୁଥିବା ମଣିଷ (ଗଳ୍ପ)

❊ ଖୁଣ୍ଟରେ ଟଙ୍ଗାଯାଇଥିବା ଲୋକ (ଗଳ୍ପ)

❊ ଫସିଲ (ଗଳ୍ପ)

❊ ତ୍ରିଭୁଜର ଚତୁର୍ଥ ବାହୁ (ଗଳ୍ପ)

❊ ଲୋପାମୁଦ୍ରା (ଗଳ୍ପ)

❊ କାକବଂଧା (କବିତା)

❊ ଅଷ୍ଟମ ମହାଦେଶ (ଖଣ୍ଡକାବ୍ୟ)

ଓଲଟ ପାଗ (କବିତା)

ଦୁଷ୍ଟ ପ୍ରଜାପତି (ଅନୁବାଦ ଉପନ୍ୟାସ)

ମୋର ନାମ୍ ଜୋକର୍ (ଅନୁବାଦ ଉପନ୍ୟାସ).

ନବଜାତକ (ଅନୁବାଦ ଉପନ୍ୟାସ)

❊ ଆଦାମ୍-ଇଭ୍ ଓ ଅଂଧକାର (ଅ : ଉପନ୍ୟାସ)

